ଭାରତ ପ୍ରଦୀପ

# ଶଙ୍କରାଚାର୍ଯ୍ୟ

ଶ୍ରୀ ଭଗୀରଥି ନେପାକ

ସୁଧାଂଶୁ ପ୍ରକାଶନ
କଟକ—୯

Source: Author, Digitized by PPRACHIN, SOA

ଭାରତ ପ୍ରଦୀପ

# ଶଙ୍କରାଚାର୍ଯ୍ୟ


ଲେଖକ :

ଭଗୀରଥି ନେପାକ



ପ୍ରକାଶକ :

ସୁଧାଂଶୁ ପ୍ରକାଶନ
କଟକ-୯

ପରିବେଷକ :

ଶ୍ରୀନିବାସ ଗୁରୁ
ଗୁରୁଜୀ ବୁକ୍‌ଷ୍ଟଲ
କଟକ-୯

ପ୍ରଚ୍ଛଦପଟ :

ସୁନାମଣି ସାମଲ
କେଦାର ସାହୁ

ପ୍ରଥମ ପ୍ରକାଶ :

୧୯୮୫

ମୁଦ୍ରଣ :

ଅନୁରୂପା ପ୍ରିଣ୍ଟର୍ସ
ପୁରୀଘାଟ ରୋଡ଼
କଟକ-୯

ମୂଲ୍ୟ :

ଟ ୪-୦୦



Source: Author, Digitized by PPRACHIN, SOA

# ସୂଚୀପତ୍ର



Source: Author, Digitized by PPRACHIN, SOA

**ବିଷୟ** | **ପୃଷ୍ଠା**



—※—

Source: Author, Digitized by PPRACHIN, SOA

## ଭାରତ ପ୍ରଦୀପ :

# ଶଙ୍କରାଚାର୍ଯ୍ୟ

ପୁଣ୍ୟଭୂମି ଭାରତ ବର୍ଷରେ ବହୁ ମହାପୁରୁଷଙ୍କ ଆବିର୍ଭାବ ଘଟିଛି । ତନ୍ମଧ୍ୟରୁ ଆଦ୍ୟ ଶଙ୍କର ବା ଶଙ୍କରାଚାର୍ଯ୍ୟ ଅନ୍ୟତମ । ସେ ଏକାଧାରରେ ପରିବ୍ରାଜକ, ସାଧୁ, ଧର୍ମ ସଂସ୍କାରକ, କବି, ଦାର୍ଶନିକ, ଆଦର୍ଶବାଦୀ ଓ ସମାଜସେବୀ ଭାବରେ ଖ୍ୟାତି ଅର୍ଜନ କରି ଅଛନ୍ତି ।

ଶଙ୍କରାଚାର୍ଯ୍ୟଙ୍କ ଆବିର୍ଭାବ କାଳ ସମ୍ପର୍କରେ ଏକାଧିକ ମତ ପ୍ରକାଶ ପାଇଥାଏ । କେତେକ ତାଙ୍କୁ ଷଷ୍ଠ ଶତାବ୍ଦୀରେ ଅବସ୍ଥାପନ କଲାବେଳେ ଆଉ କେତେକ ତାଙ୍କୁ ନବମ ଶତାବ୍ଦୀର ବୋଲି ମତପ୍ରକାଶ କରିଥାନ୍ତି ।

## ଜନ୍ମସ୍ଥାନ ଓ ପିତା ମାତା :

ଶଙ୍କରାଚାର୍ଯ୍ୟ କେରଳରେ ଜନ୍ମ ଗ୍ରହଣ କରିଥିଲେ । କେରଳର ପେରିୟାର ନଦୀ କୂଳସ୍ଥ 'କାଳାଡ଼ି' ନାମକ ଏକ କ୍ଷୁଦ୍ର ଗ୍ରାମରେ ସେ ଜନ୍ମ ଗ୍ରହଣ କଲେ । ତାଙ୍କ ପିତାଙ୍କ ନାମ ଶିବଗୁରୁ । ସେ ଜାତିରେ ନମ୍ବୁଦ୍ରି ବ୍ରାହ୍ମଣ ଥିଲେ । ପିତା ଶିବଗୁରୁ ଜଣେ ଜ୍ଞାନୀ, ପଣ୍ଡିତ ଓ ଧାର୍ମିକ ପରାୟଣ ବ୍ୟକ୍ତି ଥିଲେ । ବହୁଦିନ ପର୍ଯ୍ୟନ୍ତ ସେ ସନ୍ତାନହୀନ ଥିଲେ । ସେଥିପାଇଁ ପତ୍ନୀ ଆର୍ଯ୍ୟମ୍ବାଙ୍କ ମନରେ ଦାରୁଣ ଦୁଃଖ ଥିଲା ।

Source: Author, Digitized by PPRACHIN, SOA

ଶିବଗୁରୁ ଓ ତାଙ୍କ ପତ୍ନୀ ଶିବଙ୍କର ଭକ୍ତ ଥିଲେ । ସେମାନେ ଶିବଙ୍କୁ ଦର୍ଶନ କରିବେବେକେ ସନ୍ତାନ ଅଭିଳାଷ ଜଣାଉ ଥିଲେ ।

କଥିତ ଅଛି ଦିନେ ପତି-ପତ୍ନୀ ସ୍ୱପ୍ନ ଦେଖିଲେ ପ୍ରଭୁ ଶିବ ତାଙ୍କୁ ଦର୍ଶନ ଦେଇ କହୁଛନ୍ତି, ତୁମେ ଏକାଧିକ ପୁତ୍ର ଚାହଁ ନା, ଗୋଟିଏ ଶିକ୍ଷିତ ଅଥଚ ସ୍ୱଳ୍ପାୟୁ ପୁତ୍ର ଚାହଁ । ପତି ପତ୍ନୀ ଏକାଧିକ ପୁତ୍ର ପରିବର୍ତ୍ତେ ସ୍ୱଳ୍ପାୟୁ ହେଲେ ହେଁ ଏକ ଜ୍ଞାନୀ ଓ ପଣ୍ଡିତ ସନ୍ତାନ ଚାହାନ୍ତି । ଶେଷରେ ତାହାହିଁ ହେଲା । ପରିଣତ ବୟସରେ ସେମାନେ ଏକ ପୁତ୍ର ସନ୍ତାନ ଲାଭ କଲେ । ଶିବଙ୍କ ଦୟାରୁ ପୁତ୍ର ଲାଭ କରି-ଥିବାରୁ ସେମାନେ ଉକ୍ତ ଶିଶୁର ନାମ ରଖିଲେ 'ଶଙ୍କର' ।

## ବାଲ୍ୟଜୀବନ :

ତୁଳସୀ ଦୁଇ ପତ୍ରରୁ ବାସେ । ଅତି ବାଲ୍ୟ କାଳରୁ ଶଙ୍କରଙ୍କ ଜ୍ଞାନ ଗାରିମା ପ୍ରକାଶ ପାଇଲା । ତାଙ୍କର ବୁଦ୍ଧି ଓ ସ୍ମରଣ ଶକ୍ତି ତୀକ୍ଷ୍ଣ ଥିଲା । ଏହା ଦେଖି କେବଳ ପିତାମାତା ନୁହନ୍ତି, ସମସ୍ତେ ଆଶ୍ଚର୍ଯ୍ୟରେ ଅଭିଭୂତ ହେଲେ । ତାଙ୍କ ମାଆ ପ୍ରତିଦିନ ଶିଶୁ ଶଙ୍କରଙ୍କୁ ପୁରାଣ କାହାଣୀମାନ ଶୁଣାଉଥିଲେ । ଆଶ୍ଚର୍ଯ୍ୟର କଥା, ବାଳକ ଶଙ୍କର ସେସବୁ କାହାଣୀମାନ ଅବିକଳ ମନେରଖି କହି ଦେଇ ପାରୁଥିଲେ ।

ଶଙ୍କରଙ୍କୁ ଯେତେବେଳେ ମାତ୍ର ଅଢେଇ ବର୍ଷ ବୟସ, ସେ ସମସ୍ତ ବିଦ୍ୟାରେ ବିଚକ୍ଷଣ ହୋଇ ଉଠିଲେ, ଠିକ ଏହି ସମୟରେ ଶଙ୍କରଙ୍କ ବୃଦ୍ଧ ପିତା ପ୍ରାଣ ତ୍ୟାଗକଲେ । ତାପରେ ମାତାଙ୍କ ଉପରେ ଶଙ୍କରଙ୍କ ଲାଳନ ପାଳନ ଭାର ପଡ଼ିଲା ।

Source: Author, Digitized by PPRACHIN, SOA

ଅତି ଛୋଟ କାଳରୁ ଶଙ୍କରଙ୍କ ମନରେ ସଂସାର ବୈରାଗ୍ୟ ଭାବ ଦେଖା ଦେଇଥିଲା । ସେ ସନ୍ନ୍ୟାସ ଜୀବନ-ଯାପନ କରିବାକୁ ଶ୍ରେୟସ୍କର ମନେ କରୁଥିଲେ । ଶିଶୁ ଶଙ୍କରଙ୍କ ମତିଗତି ଦେଖି ବୃଦ୍ଧା ମାତା ବ୍ୟସ୍ତ ହୋଇ ପଡ଼ିଲେ । ଏକମାତ୍ର ପୁତ୍ରକୁ କରଛଡ଼ା କରିବାକୁ ତାଙ୍କର ଇଚ୍ଛା ନ ଥିଲା । ଦିନେ ଏକ ଅଲୌକିକ ଘଟଣା ଘଟିଲା । ଶଙ୍କରଙ୍କ ମାତା ଶଙ୍କରଙ୍କୁ ନେଇ ନଈରେ ଗାଧୋଇ ଦେଉଥିଲା ବେଳେ, ଆକସ୍ମିକ ଭାବରେ ଏକ କୁମ୍ଭୀର ଆସି ଶଙ୍କରଙ୍କୁ ଧରି ପକାଇଲା । ମାତା ଓ ପୁତ୍ର ଯେତେ ଚେଷ୍ଟା କଲେ ମଧ୍ୟ କୁମ୍ଭୀର କବଳରୁ ରକ୍ଷା ପାଇ ପାରିଲେ ନାହିଁ । ଏହି ଦୁର୍ଯୋଗ ବେଳାରେ ଶଙ୍କର ତାଙ୍କ ମାତାଙ୍କୁ ଅନୁନୟ ହୋଇ କହିଲେ, ଏବେ ମଧ୍ୟ ସମୟ ଅଛି । ମୋତେ ସନ୍ନ୍ୟାସୀ ହେବାପାଇଁ ଅନୁମତି ଦିଅ । ତାହା ହେଲେ ହୁଏତ କୁମ୍ଭୀର କବଳରୁ ମୁକ୍ତି ଲାଭ କରିବି । ଏପରି ଦୁଃସମୟରେ ମାତାଙ୍କ ପାଇଁ ଅନ୍ୟ ଗତି ନ ଥିଲା । ସେ ପୁତ୍ରଙ୍କୁ ସନ୍ନ୍ୟାସ ଗ୍ରହଣ କରିବା ପାଇଁ ଅନୁମତି ପ୍ରଦାନ କଲେ । ଆଶ୍ଚର୍ଯ୍ୟର କଥା, ଏହାପରେ ଶଙ୍କର ଅବଲୀଳା କ୍ରମେ କୁମ୍ଭୀର କବଳରୁ ଉଦ୍ଧାର ପାଇଗଲେ ।

## ସନ୍ନ୍ୟାସ ଗ୍ରହଣ :

ଏହାପରେ ଶଙ୍କର ତାଙ୍କ ବୃଦ୍ଧା ମାତାଙ୍କର ଚରଣ ଛୁଇଁ ବିଦାୟ ପ୍ରାର୍ଥନା କଲେ । ତାଙ୍କର ମାତା ପ୍ରତିଶ୍ରୁତି ରକ୍ଷାକରି ନିଜର ଏକମାତ୍ର ପୁତ୍ର ଶଙ୍କରଙ୍କୁ ସନ୍ନ୍ୟାସୀ ହେବା ପାଇଁ ଆଶୀର୍ବାଦ କଲେ ସତ; କିନ୍ତୁ ତାଙ୍କ ନୟନରେ ଅଶ୍ରୁ ଥିଲା ଓ କଣ୍ଠ ବାଷ୍ପାକୁଳ ହୋଇ ପଡ଼ିଲା । ସେ ନିଜର ଭବିଷ୍ୟତ ନିଃସଙ୍ଗ ଜୀବନ ଯାତ୍ରା କଥା ପ୍ରକାଶ କଲେ । ଏହା ଦେଖି ସନ୍ନ୍ୟାସ ଜୀବନ ପାଇଁ ପ୍ରସ୍ତୁତ

Source: Author, Digitized by PPRACHIN, SOA

ହେଉଥିବା ଶଙ୍କର କହିଲେ, ବ୍ୟସ୍ତ ହୁଅ ନାହିଁ ମା ! ମୁଁ ତୁମର ମୃତ୍ୟୁ ଶଯ୍ୟାରେ ନିଶ୍ଚୟ ଉପସ୍ଥିତ ରହିବି ଓ ତୁମର ଅନ୍ତିମ କର୍ମ ନିର୍ବାହ କରିବି । ଏହାପରେ ଶଙ୍କର ସନ୍ନ୍ୟାସୀ ହୋଇ ଚାଲିଗଲେ ।

## ଗୁରୁ ଗୋବିନ୍ଦ ପାଦ :

ଶଙ୍କର ଗୋଦାବରୀ ନଦୀ କୂଳରେ ତାଙ୍କର ଦୀକ୍ଷା ଗୁରୁଙ୍କ ଦର୍ଶନ ଲାଭ କଲେ । ଏହି ଦୀକ୍ଷା ଗୁରୁଙ୍କ ନାମ ଥିଲା ଗୋବିନ୍ଦ ପାଦ, ସେ ବିଖ୍ୟାତ ପଣ୍ଡିତ ଗୌଡ଼ପାଦଙ୍କ ଶିଷ୍ୟ ଥିଲେ । ପଣ୍ଡିତ ଗୌଡ଼ପାଦ ମାଣ୍ଡୁକ୍ୟ ଉପନିଷଦର ଭାଷ୍ୟ ରଚନା କରି ଖ୍ୟାତି ଅର୍ଜନ କରିଥିଲେ । ଗୋବିନ୍ଦପାଦ ଆଶ୍ରମବାସୀ ହୋଇ ଶିଷ୍ୟମାନଙ୍କ ଗହଣରେ ଜୀବନ ଯାତ୍ରା ନିର୍ବାହ କରୁଥିଲେ । ଯୋଗ ବିଦ୍ୟାରେ ସେ ଧୁରନ୍ଧର ଥିଲେ ।

ଗୁରୁ ଗୋବିନ୍ଦ ପାଦ ଶିଶୁ ଶଙ୍କରଙ୍କ ମଧ୍ୟରେ ଅଲୌକିକ ପ୍ରତିଭାର ସୂଚନାପାଇ ତାଙ୍କୁ ଆନନ୍ଦ ସହକାରେ ସନ୍ନ୍ୟାସ ଦୀକ୍ଷା ଦେଲେ । ସୁଦୀର୍ଘ ଆଠବର୍ଷ କାଳ ସେ ଶଙ୍କରଙ୍କୁ ନିଜ ପାଖରେ ରଖି ହିନ୍ଦୁ ଧର୍ମର ଷଡ଼ାଙ୍ଗ ଦର୍ଶନ ଓ ବେଦାନ୍ତ ଶିକ୍ଷା ଦେଲେ । ଖାଲି ନୈତିକ ନୁହେଁ, ଗୁରୁଗୋବିନ୍ଦପାଦ ଶଙ୍କରଙ୍କୁ ଯୋଗଶିକ୍ଷାରେ ପ୍ରବୀଣ କଲେ । ବର୍ତ୍ତମାନ ଶଙ୍କର ଷଡ଼ାଙ୍ଗ ଦର୍ଶନ, ବେଦାନ୍ତ, ଯୋଗ ଓ ତପସ୍ୟାରେ ସିଦ୍ଧିଲାଭ କଲେ ।

ଏହିସବୁ ଶିକ୍ଷା ଦେଇସାରି ଗୁରୁ ଗୋବିନ୍ଦପାଦଙ୍କ ନିର୍ଦ୍ଦେଶ କ୍ରମେ ଶଙ୍କର ତତ୍କାଳୀନ ପ୍ରସିଦ୍ଧ ବିଦ୍ୟାନଗରୀ କାଶୀଧାମକୁ 'ବେଦାନ୍ତ' ପ୍ରଚାର ପାଇଁ ଯାତ୍ରା କଲେ ।

Source: Author, Digitized by PPRACHIN, SOA

## କାଶୀ ଯାତ୍ରା :

ସେ ସମୟରେ କାଶୀ ବିଦ୍ୟାକେନ୍ଦ୍ର ରୂପେ ଖ୍ୟାତି ଅର୍ଜନ କରିଥିଲା । ଭାରତବର୍ଷର ଗୁଣୀ ଜ୍ଞାନୀମାନେ ଆସି କାଶୀରେ ବିଦ୍ୟାଚର୍ଚ୍ଚା କରୁଥିଲେ । ପଣ୍ଡିତମାନେ କାଶୀକୁ ଯାଇ ସେଠାକାର ବିଦ୍ୱାନମଣ୍ଡଳୀଦ୍ୱାରା ସ୍ୱୀକୃତି ଲାଭ କଲେ ପରେହିଁ, ପଣ୍ଡିତ ପଦବାଚ୍ୟ ହେଉଥିଲେ ।

କାଶୀ ଧାମରେ ପହଞ୍ଚିବା ପରେ ଶଙ୍କରଙ୍କ ନାମ ସର୍ବତ୍ର ପ୍ରଚାରିତ ହୋଇଗଲା । ସେ ଭଗବଦ୍ ଗୀତା, ଉପନିଷଦ ଓ ବ୍ରହ୍ମସୂତ୍ର ଉପରେ ପ୍ରସିଦ୍ଧ ଭାଷ୍ୟ ରଚନା କଲେ । ତାଙ୍କର ପାଣ୍ଡିତ୍ୟ ଦେଖି ବହୁ ଶିଷ୍ୟ ଆସି ତାଙ୍କଠାରୁ ବେଦାନ୍ତ ଶିକ୍ଷା କରିବାକୁ ଲାଗିଲେ ।

## କାଶୀ ଧାମରେ ଶଙ୍କର ଓ ଚଣ୍ଡାଳ

ସେହି କାଶୀ ଧାମରେ ରହଣି କାଳ ମଧ୍ୟରେ ଆଉ ଏକ ଅଦ୍ଭୁତ ଘଟଣା ଘଟିଲା । ଦିନେ ଶଙ୍କର ଗଙ୍ଗାନଦୀରେ ସ୍ନାନ ସମାପନ କରି ବିଶ୍ୱନାଥଙ୍କ ଦର୍ଶନ ପାଇଁ ମନ୍ଦିରକୁ ବାହାରିଛନ୍ତି, ଏକ ଚଣ୍ଡାଳ ଆସି ତାଙ୍କ ରାସ୍ତାରେ ଛିଡ଼ା ହେଲା । ଶଙ୍କରଙ୍କ ଶିଷ୍ୟମାନେ ଏହା ଦେଖି ଉତ୍କ୍ଷିପ୍ତ ହେଲେ ଓ ତାଙ୍କ ଗୁରୁ ଶଙ୍କରଙ୍କ ପାଇଁ ରାସ୍ତା ଛାଡ଼ି ଛିଡ଼ା ହେବାକୁ କହିଲେ । ଏହା ଦେଖି ଚଣ୍ଡାଳ ଚଳାପଥରୁ ବାହାରିଯିବା ପରିବର୍ତ୍ତେ ଶଙ୍କରଙ୍କ ନିକଟକୁ ଚାଲିଆସି ପଚାରିଲା, ଆପଣ କାହିଁକି ମୋତେ ଚଣ୍ଡାଳ ମନେ କରୁଛନ୍ତି ? ଆପଣ ବେଦାନ୍ତବାଦୀ ହୋଇ ଏପରି କହୁଛନ୍ତି କାହିଁକି ? ଆପଣ କିଏ ଓ ମୁଁ କିଏ, ସେ କଥା କଣ ଆପଣ ବୁଝିନାହାନ୍ତି ? କିଏ ବର୍ତ୍ତମାନ ପଥ ପରିଷ୍କାର କରିବ ? ଶରୀର ନା ଆତ୍ମା ?

Source: Author, Digitized by PPRACHIN, SOA

ଚଣ୍ଡାଳର ପ୍ରଶ୍ନ ଶୁଣି ଶଙ୍କରଙ୍କ ଚୈତନ୍ୟ ଉଦୟ ହେଲା । ସେ ବୁଝିଲେ, ଲୋକଟି ସାମାନ୍ୟ ନୁହେଁ । ସେ ତାଙ୍କ ଭୁଲ ବୁଝିପାରି ଚଣ୍ଡାଳର ପାଦତଳେ ପଡ଼ିଗଲେ । କୁହାଯାଏ ଯେ, ଏହି ଚଣ୍ଡାଳ ଶିବଙ୍କ ବ୍ୟତୀତ ଅନ୍ୟ କେହି ନୁହନ୍ତି । ପରବର୍ତ୍ତୀ କାଳରେ ଶଙ୍କର ମନୀଷା ବଳରେ ସ୍ତୋତ୍ର ରଚନା କଲେ । ଏହି ସ୍ତୋତ୍ରରେ ସେ ସ୍ପଷ୍ଟ କହିଛନ୍ତି, ବ୍ରାହ୍ମଣ ଚଣ୍ଡାଳ ଭିତରେ ପାର୍ଥକ୍ୟ କିଛି ନାହିଁ । ଅସଲ କଥା ହେଲା ବ୍ରହ୍ମ ଚେତନା ଆତ୍ମାକୁ ଚିହ୍ନିଲେ ହେଲା । ଯିଏ ଆତ୍ମାକୁ ଭଲ ଭାବରେ ଚିହ୍ନିଛି, ସିଏ ମୋର ଗୁରୁ ପଦବାଚ୍ୟ ।

## ପ୍ରୟାଗ ଯାତ୍ରା ଓ କୁମାରିଲ ଭଟ୍ଟ :

କାଶୀଠାରୁ ଶଙ୍କର ପ୍ରୟାଗ ଯାତ୍ରା କଲେ । ପ୍ରୟାଗରେ କୁମାରିଲ ଭଟ୍ଟ ବାସ କରୁଥିଲେ । ସେ 'ପୂର୍ବ ମୀମାଂସା'ର ପ୍ରଖ୍ୟାତ ପଣ୍ଡିତ ଥିଲେ । ତାଙ୍କ ସଙ୍ଗେ ସାକ୍ଷାତ ହେବାରୁ କୁମାରିଲ ଶଙ୍କରଙ୍କୁ ତାଙ୍କ ଶିଷ୍ୟ 'ମଣ୍ଡନ ମିଶ୍ର'ଙ୍କ ନିକଟକୁ ପଠାଇ ଦେଲେ । ମଣ୍ଡନ ମିଶ୍ର ଜଣେ ପ୍ରଖ୍ୟାତ ତାର୍କିକ ଥିଲେ । ହିନ୍ଦୁଶାସ୍ତ୍ରରେ ତାଙ୍କର ଅଗାଧ ପ୍ରବେଶ ଥିଲା । ନିଜର ଯୁକ୍ତିତର୍କ ବଳରେ ସେ ବହୁ ପଣ୍ଡିତଙ୍କୁ ପରାସ୍ତ କରିଥିଲେ ।

## ଶଙ୍କର, ମଣ୍ଡନ ମିଶ୍ର ଓ ଭାରତୀ :

ମଣ୍ଡନ ମିଶ୍ରଙ୍କ ସଙ୍ଗରେ ଶଙ୍କରଙ୍କ ଭେଟ ହେଲା । ଉଭୟଙ୍କ ମଧ୍ୟରେ ବିଭିନ୍ନ ଶାସ୍ତ୍ର ଓ ଦର୍ଶନ ଉପରେ ଯୁକ୍ତିତର୍କ ଚାଲିଲା । ମଣ୍ଡନ ମିଶ୍ରଙ୍କ ପତ୍ନୀ 'ଭାରତୀ' ମଧ୍ୟ ଜଣେ ବିଦୁଷୀ ନାରୀ ଥିଲେ । ଭାରତୀୟ ଦର୍ଶନରେ ତାଙ୍କର ଗଭୀର ପ୍ରବେଶ ଥିଲା । ଶଂକର ଓ ମଣ୍ଡନ ମିଶ୍ର ଉଭୟେ 'ଭାରତୀଙ୍କୁ' ମଧ୍ୟସ୍ଥ ରୂପେ ସ୍ୱୀକାର କଲେ ।

Source: Author, Digitized by PPRACHIN, SOA

ସ୍ଥାନରେ ସ୍ଥାଗ୍ୟ ଭାରତୀଙ୍କ ଉପସ୍ଥିତିରେ ମଣ୍ଡନ ମିଶ୍ର ଓ ତାଂକର ଉଭୟ ଉଭୟଙ୍କୁ ନାନା ପ୍ରକାର ଶାସ୍ତ୍ରୀୟ ପ୍ରଶ୍ନମାନ ପଚାରିଥିଲେ । ଏହିପରି ସତରଦିନକାଳ ଯୁକ୍ତିତର୍କ ଚାଲିଲା । ଅବଶେଷରେ ବିଦୁଷୀ ଭାରତୀ ନିରପେକ୍ଷ ଭାବରେ ଘୋଷଣା କଲେ ଯେ, ଶଂକର ତାଂକର ଅକାଟ୍ୟ ଯୁକ୍ତିରେ ମଣ୍ଡନ ମିଶ୍ରଙ୍କୁ ପରାସ୍ତ କରିଅଛନ୍ତି ।

ପ୍ରବାଦ ଅଛି, ଏହାପରେ ଶଂକର ଯେତେବେଳେ ବିଜୟ ଉଲ୍ଲାସ ଅନୁଭବ କଲେ, ଭାରତୀ ଘୋଷଣା କଲେ ଯେ, ଶଂକର ସଂପୂର୍ଣ୍ଣ ଭାବରେ ବିଜୟ ଲାଭକରି ନାହାନ୍ତି । ତାଂକ ବିଜୟ ଆଂଶିକ ମାତ୍ର । କାରଣ ସେ ମଣ୍ଡନ ମିଶ୍ରଂକ ପତ୍ନୀ ଭାରତୀଙ୍କୁ ଏପର୍ଯ୍ୟନ୍ତ ପରାସ୍ତ କରିନାହାନ୍ତି ।

ଶଂକର ଭାରତୀଂକ କଥାରେ ସମ୍ମତ ହୋଇ ତାଂକ ସଙ୍ଗରେ ଯୁକ୍ତି କରିବାକୁ ପ୍ରସ୍ତୁତ ହେଲେ । ଭାରତୀ ଏହାପରେ ଶଂକରଙ୍କୁ 'କାମଶାସ୍ତ୍ର' ସଂପର୍କରେ ଜଟିଳ ପ୍ରଶ୍ନମାନ ପଚାରି ତାଙ୍କୁ ବ୍ୟତିବ୍ୟସ୍ତ କରି ପକାଇଲେ । ଆବାଲ୍ୟ ବ୍ରହ୍ମଚାରୀ ଶଂକର କାମଶାସ୍ତ୍ର ସମ୍ପର୍କରେ ଅନଭିଜ୍ଞ ଥିଲେ । ତେଣୁ ସେ ଏ ବିଷୟରେ ନୀରବତା ଅବଲମ୍ବନ କରି, ଭାରତୀଙ୍କୁ କିଛି ସମୟ ମାଗିଲେ । ଭାରତୀଙ୍କୁ ସମୟ ଦେବା-ପାଇଁ ସମ୍ମତି ପ୍ରଦାନ କରିବା ପରେ ଶଂକର ଯୋଗବିଦ୍ୟା ବଳରେ ଜଣେ ମୃତ ରାଜକୁମାରଂକ ପିଣ୍ଡରେ ପ୍ରବେଶ କରି, ରାଜ ଭବନରେ କିଛିକାଳ ଅତିବାହିତ କଲେ ଓ କାମ ବିଦ୍ୟାରେ ପାରଗ ହୋଇ ଭାରତୀଂକ ଜଟିଳ ପ୍ରଶ୍ନର ଉତ୍ତର ଦେବାକୁ ସମର୍ଥ ହୋଇ ପାରିଥିଲେ ।

Source: Author, Digitized by PPRACHIN, SOA

ମଣ୍ଡନ. ମିଶ୍ରଙ୍କୁ ପରାସ୍ତ କରିବା ପରେ ଶଂକର ଶ୍ରେଷ୍ଠ ପଣ୍ଡିତ ରୂପେ ମାନ୍ୟତା ଲାଭ କଲେ । ଏହାପରେ ତାଂକର ଜ୍ଞାନର ପ୍ରସାର ପାଇଁ ଦିଗ୍‌ବିଜୟ ଉଦ୍ଦେଶ୍ୟରେ ଅଗ୍ରସର ହେଲେ । ଭାରତ-ବର୍ଷର ବିଭିନ୍ନ ତୀର୍ଥ ଓ ପୁଣ୍ୟ ଭୂମି ପରିଭ୍ରମଣ କରି ସେ ଅସଂଖ୍ୟ ପଣ୍ଡିତ ଓ ଜ୍ଞାନୀମାନଙ୍କୁ ସାକ୍ଷାତ କଲେ ଓ ବିଭିନ୍ନ ଧର୍ମ ଧାରଣା ସମ୍ପର୍କରେ ଯୁକ୍ତିତର୍କ କରି 'ବେଦାନ୍ତ ଦର୍ଶନ'ର ଶ୍ରେଷ୍ଠତା ପ୍ରତିପାଦନ କଲେ ।

## ଶଙ୍କରଙ୍କ ବିଜୟ :

ଶଂକର ନିଜର ପ୍ରତିଷ୍ଠା ଚାହୁଁ ନଥିଲେ । ସେ ନିଜର ଧର୍ମ ଦର୍ଶନ ବା ବେଦାନ୍ତ ଦର୍ଶନର ଶ୍ରେଷ୍ଠତା ପ୍ରତିପାଦନ କରିବାକୁ ଚାହୁଁଥିଲେ । ପରିଶେଷରେ ଭାରତବର୍ଷରେ ବେଦାନ୍ତ ଦର୍ଶନ ଶ୍ରେଷ୍ଠ ଦର୍ଶନ ରୂପେ ସ୍ୱୀକୃତି ଲାଭ କଲା ।

ଶଂକରଙ୍କ ଖ୍ୟାତି ବଢ଼ିବାକୁ ଲାଗିଲା । ସେ ଯେଉଁ ଯେଉଁ ସ୍ଥାନକୁ ଗଲେ ଓ ପଣ୍ଡିତ ଜନସାଧାରଣ ତାଂକର ଦର୍ଶନ ପାଇଁ ଓ ପ୍ରବଚନ ଶୁଣିବା ପାଇଁ ଏକତ୍ରିତ ହେଉଥିଲେ । ସେ ପଣ୍ଡିତମାନଂକ ସମେତ ରାଜା, ମହାରାଜାମାନଂକ ଦ୍ୱାରା ସେକାଳର ଶ୍ରେଷ୍ଠ ପଣ୍ଡିତ ରୂପେ ସ୍ୱୀକୃତି ଲାଭ କଲେ ।

## ଶଙ୍କରଙ୍କ ଚାରିମଠ :

ଏହିପରି ପରିଭ୍ରମଣ କଲାବେଳେ ଶଙ୍କର ଭାରତ ବର୍ଷରେ ଚାରୋଟି ମଠ ପ୍ରତିଷ୍ଠା କଲେ । ଏହି ମଠମାନଙ୍କରେ ଶଙ୍କରଙ୍କ ପ୍ରବର୍ତ୍ତିତ ବେଦାନ୍ତ ଦର୍ଶନର ଚର୍ଚ୍ଚା ହେଲା । ଏହି ଚାରିମଠ ହେଲା –

Source: Author, Digitized by PPRACHIN, SOA

୧ । ଉତ୍ତରପ୍ରଦେଶର ବଦ୍ରିନାଥ ମଠ

୨ । ଓଡ଼ିଶାର ପୁରୀ ମଠ

୩ । କର୍ଣ୍ଣାଟକର ଶୃଙ୍ଗେରୀ ମଠ

୪ । ଗୁଜ୍‌ରାଟର ଦ୍ୱାରକା ମଠ

ଶଙ୍କର କର୍ଣ୍ଣାଟକର ଶୃଙ୍ଗେରୀ ମଠରେ ଅବସ୍ଥାନ କରୁଥିଲା ବେଳେ, ତାଙ୍କ ମାତାଙ୍କର ଅସୁସ୍ଥତା ସମ୍ପର୍କରେ ସମ୍ବାଦ ଆସି ପହଞ୍ଚିଲା । ସେ ମାତାଙ୍କୁ ଦେଇଥିବା ପୂର୍ବ ପ୍ରତିଶ୍ରୁତି ସ୍ମରଣ କଲେ ଓ କେରଳର 'କାଲଡି' ଗ୍ରାମକୁ ସହସା ଯାତ୍ରାକଲେ ।

## ମାତାଙ୍କ ଶେଷ ଦର୍ଶନ ଓ ସଂସ୍କାର :

ମାତା ଆର୍ଯ୍ୟମ୍ବା ରୋଗଶଯ୍ୟାରେ ନିଜ ପୁତ୍ର ଶଙ୍କରଙ୍କୁ ଦେଖି ଅତ୍ୟନ୍ତ ଆନନ୍ଦିତା ହେଲେ । ତାଙ୍କ ଚକ୍ଷୁ ଯୁଗଳରୁ ଆନନ୍ଦର ଅଶ୍ରୁ ଝରିବାକୁ ଲାଗିଲା । ସେ ଶଙ୍କରଙ୍କ ଜ୍ଞାନ ଓ ପାଣ୍ଡିତ୍ୟ କଥା ଶୁଣି ଆହୁରି ଆନନ୍ଦ ପ୍ରକାଶ କଲେ । ସେ ପ୍ରକାଶ୍ୟରେ ବ୍ୟକ୍ତ କଲେ, ମାତା ହିସାବରେ ସେ ମୋର ଆଶା ପରିପୂର୍ଣ୍ଣ ହେଲା । ମୋ ଜୀବନ ସାର୍ଥକ ହେଲା । ଏଥର ମୃତ୍ୟୁକୁ ମୋର ଭୟ ନାହିଁ ।

ଶଙ୍କର ମାତାଙ୍କ ସେବା ଶୁଶ୍ରୂଷା କଲେ ଓ ଶଯ୍ୟା ପାଖରେ ବସି ସୁଲଳିତ କଣ୍ଠରେ 'ଭଜ ଗୋବିନ୍ଦମ୍', 'ଭଜ ଗୋବିନ୍ଦମ୍' ଶ୍ଳୋକ ପାଠ କରିବାକୁ ଲାଗିଲେ । ସେହି ଅମୃତମୟ ଶ୍ଳୋକ ଶ୍ରବଣ କରୁ କରୁ ମାତାଙ୍କର ଦେହାନ୍ତ ହେଲା ।

ଏହାପରେ ଶଙ୍କର ଜ୍ଞାତି ଭାଇମାନଙ୍କୁ ଶବ ସଂସ୍କାରରେ ସାହାଯ୍ୟ କରିବାକୁ ନିବେଦନ କଲେ । କିନ୍ତୁ ଅନ୍ଧ କୁସଂସ୍କାରର

Source: Author, Digitized by PPRACHIN, SOA

ବଶବର୍ତ୍ତୀ ହୋଇ ନୈଷ୍ଠିକ ନମ୍ବୁଦ୍ରୀ ବ୍ରାହ୍ମଣମାନେ ଶଙ୍କରଙ୍କ ମାତାଙ୍କର ଶବସଂସ୍କାର ପାଇଁ ଅସ୍ୱୀକାର କଲେ । ସେମାନେ ଅଭିଯୋଗ କଲେ, ଜଣେ ସନ୍ନ୍ୟାସୀ ତାର ମାତାର ଶୁଦ୍ଧି କ୍ରିୟା ଧାରଣ କରି ପାରିବ ନାହିଁ । କାରଣ ଶାସ୍ତ୍ରରେ ସେପରି ନିୟମ ନାହିଁ । ଖାଲି ସେତିକି ନୁହେଁ ଜ୍ଞାତିଭାଇମାନେ ଶଂକରଙ୍କୁ ତାଂକ ପରଲୋକଗତା ମାତାଂକର ଶବ ବୋହି ବାହାରକୁ ନେବାପାଇଁ ମଧ୍ୟ ଅନୁମତି ଦେଲେ ନାହିଁ । ସେମାନେ କହିଲେ, ଶଂକର ଯଦି ତାଂକ ମାତାଂକର ଶବ ଛୁଅଁନ୍ତି, ତାହାହେଲେ ସେମାନେ ସଂସ୍କାର କର୍ମରେ ଯୋଗ ଦେବେ ନାହିଁ ।

ଶଂକର ନିଜର ଜ୍ଞାତିଭାଇମାନଂକ ଅଭି ବ୍ୟବହାର ଶୁଣି ଦୁଃଖ ପ୍ରକାଶ କଲେ । ନିଜ ମାତାଂକ ମୃତାହ କାର୍ଯ୍ୟ ନିଜ ହସ୍ତରେ ସମାପନ କରିବାକୁ ସଂକଳ୍ପ କରି ସେ ନିଜ ମାତାଂକ ମୃତ ଶରୀରର ଅବୟବକୁ ନିଜ ହସ୍ତରେ ବିଚ୍ଛିନ୍ନ କଲେ ଓ ନିଜ ସ୍କନ୍ଧରେ ବୋହି ନେଇ ଗୃହ ସଂଲଗ୍ନ ଅଗଣାରେ ଏକତ୍ରିତ କଲେ । ତାପରେ ନିଜର ଗୃହୋପକରଣରେ ଅଗ୍ନି ସଂଯୋଗ କରି ମାତାଂକ ଶବ ସଂସ୍କାର କଲେ । ଏହାପରେ ଗ୍ରାମ ଛାଡ଼ି ଚାଲିଗଲେ ।

ଶଂକରଙ୍କୁ ୩୨ ବର୍ଷ ବୟସ ହେଲାବେଳେ ସେ କେଦାର-ନାଥରେ ଅଦୃଶ୍ୟ ହୋଇଗଲେ । କଥିତ ଅଛି, ଦିନେ ପ୍ରାତଃ କାଳରେ ସେ ହିମାଳୟର ଏକ ଗୁମ୍ଫା ମଧ୍ୟରେ ପ୍ରବେଶ କରି ଅଦୃଶ୍ୟ ହୋଇଗଲେ ।



Source: Author, Digitized by PPRACHIN, SOA

# ଶଙ୍କରାଚାର୍ଯ୍ୟଙ୍କ ଅଲୌକିକ କାହାଣୀ

ମହାପୁରୁଷ ଶଂକରାଚାର୍ଯ୍ୟଙ୍କୁ 'ଜଗଦ୍‌ଗୁରୁ' ଉପାଧି ମଣ୍ଡିତ କରାଯାଇଛି । ଏହି ଜଗଦ୍‌ଗୁରୁଂକ ସମ୍ପର୍କରେ ଅନେକ ଅଲୌକିକ କାହାଣୀ ଶୁଣାଯାଏ ।

## ଶଙ୍କର ସ୍ୱୟଂ 'ଶୂଳପାଣି ଶଙ୍କର'

ଶଂକରଂକ ଜନ୍ମ ସଂପର୍କରେ କୁହାଯାଏ ଏକ ସମୟରେ ଦେବର୍ଷି ନାରଦ ପୃଥିବୀ ପର୍ଯ୍ୟଟନ କରୁ କରୁ ଦେଖିଲେ ଜଗତ୍ ବାସୀ ଆଚାରଭ୍ରଷ୍ଟ ହୋଇ ନାନା କୁକର୍ମରେ ନିମଗ୍ନ ଅଛନ୍ତି । ବୌଦ୍ଧ, ଜୈନ, ଶାକ୍ତ ପ୍ରଭୃତି ବହୁ ଧର୍ମର ଆବିର୍ଭାବ ଘଟି ଜନମାନସକୁ ବିଭ୍ରାନ୍ତ କରୁଛି, ଏହିପରି ଏକ ସଙ୍କଟ କାଳରେ ସନାତନ ହିନ୍ଦୁ ଧର୍ମ ଅଧୋଗତି ଲାଭ କରୁଛି । ଦେବର୍ଷି ନାରଦ ଏହା ଦେଖି ଅଧୀର ହେଲେ ଓ ସନାତନ ଧର୍ମ ଉଦ୍ଧେଶ୍ୟରେ ମର୍ତ୍ତ୍ୟର ସମସ୍ତ ବିବରଣୀ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ଆଗରେ ଉପସ୍ଥାପନ କଲେ ।

ଦେବର୍ଷି ନାରଦଙ୍କ ମୁଖରୁ ମର୍ତ୍ତ୍ୟର ସମସ୍ତ ବିଷୟ ଅବଗତ ହେବା ପରେ ଶୂଳପାଣି ଶଙ୍କରଙ୍କ ଆଗରେ ସନାତନ ହିନ୍ଦୁ ଧର୍ମର ରକ୍ଷା ପାଇଁ ନିବେଦନ କଲେ । ଫଳରେ ଶୂଳପାଣି ସ୍ୱୟଂ

Source: Author, Digitized by PPRACHIN, SOA

ଶଙ୍କରାଚାର୍ଯ୍ୟ ରୂପରେ ଧରାଧାମରେ ଅବତୀର୍ଣ୍ଣ ହୋଇ ଏହାର ପ୍ରତିକାର କରିବେ ବୋଲି ନାରଦଙ୍କୁ ପ୍ରତିଶ୍ରୁତି ଦେଲେ ।

ଏହାପରେ ଶୂଳପାଣି ଶଙ୍କର ଚିଦାମ୍ବରମ୍ ନଗରରେ 'ବିଶ୍ୱଜିତ' ନାମକ ଏକ ବ୍ରାହ୍ମଣଙ୍କ ଔରସରେ ତପସ୍ୱୀ ପତ୍ନୀ ବଶିଷ୍ଠା ଦେବୀଙ୍କ ଗର୍ଭରୁ ଜାତ ହୋଇ, 'ଶଙ୍କରାଚାର୍ଯ୍ୟ' ନାମ ଧାରଣ କଲେ । ସେ ଜଗତବାସୀଙ୍କ ମଙ୍ଗଳ ସାଧନ ନିମନ୍ତେ ଓ ଧର୍ମ ରକ୍ଷା ପାଇଁ ଜଗତରେ ଅଦ୍ୱୈତ ମତ ପ୍ରଚାର କରିଥିଲେ ।

ଆଉ ଏକ ମତ ଅନୁସାରେ—ମୂଗ ନାରାୟଣ ନାମରେ କେରଳ ଦେଶର ଜଣେ ରଜା ପୂର୍ଣ୍ଣାନଦୀ ତୀରରେ କେତୋଟି ଶିବମନ୍ଦିର ନିର୍ମାଣ କରାଇ ଶିବଲିଙ୍ଗ ସ୍ଥାପନ କରିଥିଲେ । ଶିବ-ମନ୍ଦିରର ପୂଜା ଆରାଧନା କରିବା ନିମନ୍ତେ ସେ ବିଦ୍ୟାଧିରାଜ ନାମକ ଜଣେ ଶାସ୍ତ୍ରଜ୍ଞ ବ୍ରାହ୍ମଣଙ୍କୁ ନିଯୁକ୍ତ କରିଥିଲେ । ବିଦ୍ୟାଧି-ରାଜଙ୍କର ପୁତ୍ରର ନାମ 'ଶିବଗୁରୁ' ।

ଶିବଗୁରୁ ଗୁରୁ ଗୃହରେ ରହି ବିଦ୍ୟା ଶିକ୍ଷା କଲେ । ଶିକ୍ଷା ସମାପ୍ତ ପରେ ଗୁରୁଙ୍କ ନିକଟରୁ ଅନୁମତି ପାଇ ସେ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ଏହାପରେ 'ସୁଭଦ୍ରା' ନାମ୍ନୀ ଜଣେ ରୂପବତୀ ଓ ଗୁଣବତୀ ରମଣୀଙ୍କୁ ବିବାହ କରି ଗୃହସ୍ଥାଶ୍ରମରେ ପ୍ରବେଶ କଲେ ।

ଶିବଗୁରୁ ଓ ସୁଭଦ୍ରାଙ୍କ ବୈବାହିକ ଜୀବନ ସୁଖମୟ ଥିଲା । ଉଭୟେ ପରସ୍ପରକୁ ଲାଭକରି ସୁଖୀ ଥିଲେ । କିନ୍ତୁ ଦୀର୍ଘ କାଳ ଧରି ସେମାନେ ସନ୍ତାନ ମୁଖ ଦର୍ଶନରୁ ବଞ୍ଚିତ ଥିଲେ । ଦିନେ ସୁଭଦ୍ରା ଶିବଗୁରୁଙ୍କୁ କହିଲେ, "ଏତେକାଳ ହେଲା ସନ୍ତାନ ଲାଭ

Source: Author, Digitized by PPRACHIN, SOA

ହୋଇଲା ନାହିଁ । ଶୁଣିଛୁ, ଶୂଳପାଣିଙ୍କ ଆରାଧନା କଲେ ସନ୍ତାନ ଲାଭ ହୁଏ । ତେଣୁ ଚାଲ, ଶୂଳପାଣି ଶିବଙ୍କ ଆରାଧନା କରିବା ।''

ସେହିଦିନଠାରୁ ଶିବଗୁରୁ ଓ ତାଙ୍କ ପତ୍ନୀ ଶିବଙ୍କ ଆରାଧନାରେ ଲାଗିପଡ଼ିଲେ । ସେମାନଙ୍କ ସେବା ପୂଜାରେ ଶିବ ସନ୍ତୁଷ୍ଟ ହୋଇ ସ୍ୱପ୍ନରେ ଦେଖାଦେଲେ ଓ ଶିବଗୁରୁଙ୍କୁ ବର ମାଗିବାକୁ କହିଲେ । ଶିବଗୁରୁ ଜଣାଇଲେ—ପ୍ରଭୋ ! ଯଦି ମୋ ଉପରେ ପ୍ରସନ୍ନ ହେଲେ, ତାହାହେଲେ ଆପଣଙ୍କ ପରି ଏକ କୁମାର ଦିଅନ୍ତୁ ।

ଏହାର କିଛି କାଳ ପରେ ସୁଭଦ୍ରା ଗର୍ଭବତୀ ହେଲେ ଏବଂ ଯଥା ସମୟରେ ଏକ ପୁତ୍ରରତ୍ନ ଲାଭ କଲେ । ଶିବଙ୍କ କରୁଣାରୁ ପୁତ୍ର ଲାଭ ହୋଇଥିବାରୁ ପୁତ୍ରର ନାମ ଶଙ୍କର ରଖାଗଲା ।

ନବଜାତ ସନ୍ତାନ 'ଶଙ୍କର' ଶୁକ୍ଳ ପକ୍ଷର ଚନ୍ଦ୍ରମା ପରି ବଢ଼ିବାକୁ ଲାଗିଲେ । କୁହାଯାଏ ଯେ, ସେ ଏକ ବର୍ଷ ବୟସରେ ମାତୃଭାଷା ଶିକ୍ଷା କରି ପାରିଥିଲେ । ଦ୍ୱିତୀୟ ବର୍ଷ ବୟସରୁ ମାତାଙ୍କ ମୁଖରୁ ପୁରାଣ ଆଦି ଶୁଣି ସ୍ମରଣ ରଖି ପାରୁଥିଲେ । ସେ ତୃତୀୟ ବର୍ଷରେ ପଦାର୍ପଣ କଲାପରେ, ତାଙ୍କର ପିତୃବିୟୋଗ ଘଟିଥିଲା । ପୁତ୍ରର ଅନନ୍ୟ ସାଧାରଣ ପ୍ରତିଭା ଦର୍ଶନ କରିବା ପିତାଙ୍କ ଭାଗ୍ୟରେ ଘଟିଲା ନାହିଁ ।

ଶଙ୍କରଙ୍କ ବୟସ ଯେତେବେଳେ ମାତ୍ର ଚାରିବର୍ଷ, ସେ ଜଣେ ଜ୍ଞାନୀ ଓ ପଣ୍ଡିତ ରୂପରେ ଖ୍ୟାତି ଲାଭ କଲେ ।

ପଞ୍ଚମ ବର୍ଷରେ ଶଙ୍କରଙ୍କ ବ୍ରତ ବିଧାନ ଅନୁଷ୍ଠିତ ହେଲା ଓ ସେ ଯଜ୍ଞୋପବୀତ ଧାରଣ କଲେ । ଏହାପରେ ତତ୍କାଳୀନ ବିଧି

Source: Author, Digitized by PPRACHIN, SOA

ଅନୁସାରେ ସେ ବିଦ୍ୟାଧ୍ୟୟନ ନିମନ୍ତେ ଗୁରୁ ଆଶ୍ରମକୁ ପ୍ରେରିତ ହେଲେ ।

କଥିତ ଅଛି, ଗୁରୁ ଆଶ୍ରମରେ ମାତ୍ର ଏକବର୍ଷ ଅବସ୍ଥାନ କରି ଶଙ୍କର ସକଳ ଶାସ୍ତ୍ରରେ ପାରଦର୍ଶିତା ଲାଭକଲେ ।

ଷଷ୍ଠବର୍ଷରେ ସେ ବେଦରେ ବ୍ରହ୍ମାଙ୍କ ତୁଲ୍ୟ, ବିଦ୍ୟାରେ ବୃହସ୍ପତିଙ୍କ ତୁଲ୍ୟ ଓ ସିଦ୍ଧାନ୍ତରେ ବ୍ୟାସଙ୍କ ସମକକ୍ଷ ହେଲେ ।

## ଲକ୍ଷ୍ମୀଙ୍କ ଅନୁକମ୍ପା

ଗୁରୁ ଆଶ୍ରମରେ ଥିଲା ବେଳେ, ଦିନେ ଶଙ୍କର ଭିକ୍ଷା ଗ୍ରହଣ କରିବା ନିମନ୍ତେ ଏକ ବ୍ରାହ୍ମଣ ଦ୍ୱାରରେ ଉପସ୍ଥିତ ହେଲେ । ଗୃହସ୍ୱାମୀ ନିଜେ ଗରିବ ଥିବା ହେତୁ, ସେ ମଧ୍ୟ ଭିକ୍ଷା ବୃତ୍ତି ଅବଲମ୍ବନ କରି ଚଳୁଥିଲେ । ସୁତରାଂ ସେ ମଧ୍ୟ ଭିକ୍ଷାପାଇଁ ବାହାରକୁ ଚାଲି ଯାଇଥିଲେ । ବ୍ରାହ୍ମଣଙ୍କ ପତ୍ନୀ ଅତି ଦୁଃଖ ସହକାରେ ତାଙ୍କୁ ଜଣାଇଲେ,—ପୁଅ ! ଆମ୍ଭେମାନେ ନିତାନ୍ତ ଗରିବ । ଭିକ୍ଷା କରି ପେଟ ପୋଷୁ । ବିଧାତାର ଅନୁଗ୍ରହରୁ ବଞ୍ଚିତ ହୋଇ ଥିବାରୁ ଭିକ୍ଷା ଦାନ ପାଇଁ ଅସମର୍ଥ । କିନ୍ତୁ ଅତିଥିଙ୍କୁ ଶୂନ୍ୟ ହସ୍ତରେ ଫେରାଇ ଦେବା ଅନ୍ୟାୟ । ଘରେ କେବଳ ଏକ ଆମଳକୀ ଫଳଟିଏ ଅଛି । ଅନୁଗ୍ରହ ପୂର୍ବକ ଏହି ଫଳଟି ଗ୍ରହଣ କରନ୍ତୁ ।

ବ୍ରାହ୍ମଣୀଙ୍କ କଥା ଶୁଣି ସେମାନଙ୍କର ଦରିଦ୍ର ଅବସ୍ଥା ସମ୍ପର୍କରେ ଅବଗତ ହୋଇ ଶଙ୍କର ମର୍ମାହତ ହେଲେ । ସେ ଧନପ୍ରାପ୍ତି ନିମନ୍ତେ ଲକ୍ଷ୍ମୀ ଦେବୀଙ୍କର ସ୍ତବ ପାଠ କଲେ । ଲକ୍ଷ୍ମୀ ସନ୍ତୁଷ୍ଟ ହୋଇ ବର ଯାଚିବାରୁ, ଶଙ୍କର ସେହି ଗରିବ ବ୍ରାହ୍ମଣର

Source: Author, Digitized by PPRACHIN, SOA

ଅବସ୍ଥା ପରିବର୍ତ୍ତନ ପାଇଁ ନିବେଦନ କଲେ । ଲକ୍ଷ୍ମୀଙ୍କ ଅନୁକମ୍ପାରୁ ଆଜନ୍ମ ଦରିଦ୍ର ବ୍ରାହ୍ମଣଙ୍କ ଭାଗ୍ୟ ପରିବର୍ତ୍ତିତ ହେଲା । ତାଙ୍କର ଝାଣ୍ଟିକୁଟୀର ସୁବର୍ଣ୍ଣ ବୋଧିରେ ପରିଣତ ହେଲା । ଘର ଭିତରେ ଧନ ଧାନ୍ୟ ଭରିଗଲା । ଏହି ଅପୂର୍ବ ଦୃଶ୍ୟ ଦେଖି ବିପ୍ର-ଦମ୍ପତି ଶଙ୍କରଙ୍କୁ ଧନ୍ୟବାଦ ଜଣାଇଲେ ।

## ଶଙ୍କରଙ୍କ ବରରେ ରାଜାଙ୍କ ପୁତ୍ରଲାଭ

ଶଙ୍କରଙ୍କର ଏହି ଅଦ୍ଭୁତ ଶକ୍ତି ଗୃହେ ଗୃହେ ସର୍ବତ୍ର ପ୍ରଚାରିତ ହେଲା । ସେହି ଦେଶର ରାଜାଙ୍କ କାନକୁ କଥା ଗଲା । ରାଜା ଚନ୍ଦ୍ର ଶେଖର ଅପୁତ୍ରକ ହୋଇ ମନ ଦୁଃଖରେ କାଳଯାପନ କରୁଥିଲେ । ସନ୍ତାନ ଲାଭ ଉଦ୍ଦେଶ୍ୟରେ ସେ ଦଶସହସ୍ର ସ୍ୱର୍ଣ୍ଣମୁଦ୍ରା ସହ ଶଙ୍କରଙ୍କ ନିକଟରେ ଉପସ୍ଥିତ ହେଲେ ଓ ଦୁଃଖ ଜଣାଇ ତାଙ୍କର ଶରଣ ପଶିଲେ । ଶଙ୍କର ରାଜାଙ୍କ ଧନ ସ୍ପର୍ଶ ନ କରି ତାହା ଦୀନ ଦରିଦ୍ରଙ୍କୁ ଦାନକରିବାକୁ କହିଲେ ଓ ରାଜାଙ୍କର ପୁତ୍ର ଲାଭ ନିମନ୍ତେ ଈଶ୍ୱରଙ୍କୁ ପ୍ରାର୍ଥନା କଲେ । ଶଙ୍କରଙ୍କ ପ୍ରାର୍ଥନା ବଳରେ ରାଜା ଚନ୍ଦ୍ରଶେଖରଙ୍କ ଯଥା ସମୟରେ ସନ୍ତାନ ଲାଭ ଘଟିଲା । ଏହି ଘଟଣା ପରେ ଶଙ୍କରଙ୍କ ଖ୍ୟାତି ଅଧିକ ବଢ଼ିଗଲା ।

ଶଙ୍କର ଗୁରୁଆଶ୍ରମରେ ମାତ୍ର ସପ୍ତମ ବର୍ଷ ବୟସରେ ସକଳ ପ୍ରକାର ବିଦ୍ୟା ଶିକ୍ଷା ସମାପ୍ତ କରି ଗୁରୁଙ୍କ ଆଦେଶ କ୍ରମେ ନିଜ ଘରକୁ ଫେରିଗଲେ ।

## କୁମ୍ଭୀର କବଳରେ ଶଙ୍କର :

ଅଷ୍ଟମ ବର୍ଷ ବୟସରେ ଶଙ୍କରଙ୍କ ମନରେ ସଂସାର ବୈରାଗ୍ୟ ଦେଖା ଦେଲା । ସେ ସନ୍ନ୍ୟାସୀ ହେବାକୁ ଇଚ୍ଛା ପ୍ରକାଶ କଲେ ଓ ସେଥିପାଇଁ ମାତାଙ୍କ ଅନୁମତି ପ୍ରାର୍ଥନା କଲେ । କିନ୍ତୁ ତାଙ୍କ ମାତା

Source: Author, Digitized by PPRACHIN, SOA

ଏଥିରେ ରାଜି ହେଲେ ନାହିଁ । ଥରେ ସେ ମାତାଙ୍କ ସଙ୍ଗରେ ଜଣେ ବନ୍ଧୁଙ୍କ ଘରକୁ ନଦୀ ପାରି ହୋଇଗଲେ । ସେମାନେ ଗଲାବେଳେ ନଦୀ ଶୁଷ୍କ ଥିଲା । କିନ୍ତୁ ବନ୍ଧୁଙ୍କ ଘରୁ ଫେରି ଆସିଲା ବେଳେ ଉକ୍ତ ନଦୀ ଜଳପୂର୍ଣ୍ଣ ହୋଇଗଲା । ମାତା ପୁତ୍ର ଉଭୟେ ନଦୀ ପାରି ହେଲା ବେଳକୁ ଏକ କୁମ୍ଭୀର ଆସି ଶଙ୍କରଙ୍କ ଗୋଡ଼ ଭିଡ଼ିଲା । ଶଙ୍କର କହିଲେ, ମାଆ ! ମୋତେ ସନ୍ନ୍ୟାସ ଗ୍ରହଣ ପାଇଁ ଅନୁମତି ନ ଦେଲେ, କୁମ୍ଭୀର ଗର୍ଭରେ ପଡ଼ିବି । ମାତା ପୁତ୍ରର ପ୍ରାଣ ରକ୍ଷା ଉଦ୍ଦେଶ୍ୟରେ ସନ୍ନ୍ୟାସ ଗ୍ରହଣ ନିମନ୍ତେ ଅନୁମତି ପ୍ରଦାନ କଲେ ।

ଏହାପରେ ଆଶ୍ଚର୍ଯ୍ୟର ବିଷୟ ସେ କୁମ୍ଭୀର କବଳରୁ ଉଦ୍ଧାର ପାଇଗଲେ । ନଦୀର ଜଳ ଶୁଷ୍କ ହେଲା ।

**ସନ୍ନ୍ୟାସ ଗ୍ରହଣ :**

ଶଙ୍କର ମାତାଙ୍କ ଅନୁମତି କ୍ରମେ ସନ୍ନ୍ୟାସ ଗ୍ରହଣ କରି ସର୍ବପ୍ରଥମେ 'ପରମହଂସ ଗୋବିନ୍ଦ ସ୍ୱାମୀଙ୍କ' ଶିଷ୍ୟତ୍ୱ ଗ୍ରହଣ କଲେ ।

**ବାରଣସୀରେ ଶଙ୍କର ଓ ବୃଦ୍ଧରୂପୀ ବ୍ୟାସଦେବ :**

ଗୁରୁଙ୍କ ନିକଟରୁ କିଛି କାଳ ଶିକ୍ଷା ଲାଭ କରିବା ପରେ ତାଙ୍କର ଆଦେଶ କ୍ରମେ ଶଙ୍କର ବାରଣସୀକୁ ଗମନ କଲେ । ବାରଣସୀ ତତ୍କାଳୀନ ସମୟରେ ବିଦ୍ୟାପୀଠ ରୂପେ ବିବେଚିତ ହେଉଥିଲା । ଶଙ୍କର ବାରଣସୀରେ ବାସକରି ବେଦାନ୍ତ ଧର୍ମ ପ୍ରଚାର କଲେ । ତାଙ୍କର ଧର୍ମ ଉପଦେଶ ଶୁଣି, 'ଚୋଳ' ରାଜ୍ୟର 'ସନନ୍ଦ' ନାମକ ଜଣେ ବ୍ୟକ୍ତି ସର୍ବ ପ୍ରଥମେ ଶଙ୍କରଙ୍କ ପ୍ରଥମ ଶିଷ୍ୟହେଲେ ।

Source: Author, Digitized by PPRACHIN, SOA

କାଶୀ ଧାମରେ ବାସ କଲା ବେଳେ ଦିନେ ସେ ମଣିକର୍ଣ୍ଣିକା ଘାଟିରେ ବୃଦ୍ଧ ବ୍ରାହ୍ମଣ ରୂପୀ 'ବ୍ୟାସଦେବ'ଙ୍କ ସାକ୍ଷାତ୍ ଲାଭ କଲେ । ତାଂକ ସହ ଶଂକରଂକ ଶାସ୍ତ୍ର ଆଲୋଚନା ହେଲା । 'ବ୍ରହ୍ମସୂତ୍ର' ବ୍ୟାଖ୍ୟା ଉପରେ ଉଭୟଙ୍କ ମଧ୍ୟରେ ଯୁକ୍ତିତର୍କ ଚାଲିଲା । ଶଂକର ରାଗିଯାଇ ଶିଷ୍ୟ ସନନ୍ଦଙ୍କୁ ଉକ୍ତ ବୃଦ୍ଧ ବ୍ରାହ୍ମଣଙ୍କୁ ଦୂର କରିବା ପାଇଁ ଆଦେଶ ଦେଲେ । କିନ୍ତୁ ପରେ ବୃଦ୍ଧ ବ୍ରାହ୍ମଣ 'ବ୍ୟାସଦେବଂକ ପରିଚୟ ପାଇ ଦୁଃଖ ପ୍ରକାଶ କଲେ ଓ ତାଂକର ସନ୍ତୋଷ ବିଧାନ ନିମନ୍ତେ ସ୍ତବ ପାଠ କଲେ । ବ୍ୟାସଦେବ ପ୍ରସନ୍ନ ହୋଇ ଶଂକରଙ୍କୁ 'ଅଦ୍ୱୈତମତ' ପ୍ରଚାର ପାଇଁ ଆଶୀର୍ବାଦ ପ୍ରଦାନ ଇଲେ ।

କୁହାଯାଏ, ଶଙ୍କର ମାତ୍ର ଷୋହଳ ବର୍ଷ ପରମାୟୁ ନେଇ ଜନ୍ମଗ୍ରହଣ କରିଥିଲେ । ବ୍ୟାସଦେବଂକ ଆଶୀର୍ବାଦରୁ ତାଂକ ପରମାୟୁ ଦ୍ୱିଗୁଣିତ ହେଲା ।

ଶଂକର କାଶୀଧାମରେ ରହି ସୂର୍ଯ୍ୟ ଚନ୍ଦ୍ର ଉପାସକୁ ଗ୍ରହ ଉପାସକୁ ତଥା କର୍ମକାଣ୍ଡ ସମର୍ଥକ ପଣ୍ଡିତମାନଙ୍କ ସଙ୍ଗେ ଧର୍ମ ବିଷୟରେ ଯୁକ୍ତି ତର୍କ କରି, ସେମାନଙ୍କୁ ସ୍ୱୀୟ ଅଦ୍ୱୈତମତାବଲମ୍ବୀ କରାଇ ଥିଲେ ।

## ଶଙ୍କରଙ୍କ ଦିଗ୍‌ବିଜୟ

କାଶୀ ଧାମରେ ଶଙ୍କରଙ୍କ ପ୍ରତିଷ୍ଠା ବଢ଼ିଲା । ସବୁ ମତାବଲମ୍ବୀମାନେ ତାଙ୍କୁ ଅଦ୍ୱିତୀୟ ପଣ୍ଡିତ ରୂପେ ସ୍ୱୀକାର କଲେ । ଏହାପରେ ସେ ଦିଗ୍‌ବିଜୟ ପାଇଁ କାଶୀଧାମରୁ ବହିର୍ଗତ ହେଲେ ।

Source: Author, Digitized by PPRACHIN, SOA

ଶଙ୍କର ଧନ ସମ୍ପଦ ବା ରାଜ୍ୟଲୋଭ ଆଶାରେ ଦିଗ୍‌ବିଜୟ ଅଭିଯାନ କରି ନ ଥିଲେ । ତତ୍କାଳୀନ ଭାରତର ବିଭିନ୍ନ ଧର୍ମ ମତରେ ଅସାରତା ପ୍ରତିପାଦନ କରି ସ୍ୱୀୟ 'ଅଦ୍ୱୈତବାଦ' ସିଦ୍ଧାନ୍ତର ପ୍ରତିଷ୍ଠା କରିବା ତାଙ୍କର ପ୍ରଧାନ ଉଦ୍ଦେଶ୍ୟ ଥିଲା ।

ଶଙ୍କର କାଶୀରୁ ବାହାରି କୁରୁକ୍ଷେତ୍ରରେ ପହଞ୍ଚିଲେ । ଏଠାରେ କଣ୍ଟକବନ କାଟିଲା ବଦରିକାଶ୍ରମ ବା ବଦ୍ରିନାରାୟଣ ଉଦ୍ଦେଶ୍ୟରେ ଯାତ୍ରା କଲେ । ବଦ୍ରିନାଥରେ 'ଅଥର୍ବ ବେଦ'ର ପ୍ରଚାର ନିକାଟେ ଗୋଟିଏ ମଠ ସ୍ଥାପନ କଲେ ଓ 'ନନ୍ଦ' ନାମକ ଜଣେ ଶିଷ୍ୟଙ୍କୁ ସେହି ମଠର ଅଧ୍ୟକ୍ଷ କଲେ । ନନ୍ଦ ବଦ୍ରିନାଥ ମଠରେ ରହି ଅଥର୍ବ ବେଦର ପ୍ରଚାର ନିମନ୍ତେ ଆବିଷ୍ଟ ହେଲେ ।

ବଦ୍ରିନାଥରୁ ବାହାରି ଶଙ୍କର ହସ୍ତିନାପୁରର 'ବିଦ୍ୟାଳୟ' ବା 'ବିଜଳବିନ୍ଦୁ' ନାମକ ସ୍ଥାନରେ ପହଞ୍ଚିଲେ । ଏଠାରେ ମଣ୍ଡନ ନାମକ ଜଣେ କର୍ମକାଣ୍ଡ ବାଗ୍ମୀ ପଣ୍ଡିତ ବ୍ରାହ୍ମଣ ସସ୍ତ୍ରୀକ ବାସ କରୁଥିଲେ । ସନ୍ନ୍ୟାସୀମାନଙ୍କ ପ୍ରତି ତାଙ୍କର ଅସୂୟା ଭାବ ଥିଲା ।

ଶଙ୍କର ମଣ୍ଡନ ମିଶ୍ରଙ୍କ ଦୁଆର ମୁହଁରେ ଉପସ୍ଥିତ ହେଲେ । କିନ୍ତୁ ସେତେବେଳେ ଦ୍ୱାର ପକାଇ, ଘର ଭିତରେ ଶ୍ରାଦ୍ଧକ୍ରିୟା କରୁଥିଲେ । ଶଙ୍କର ଯୋଗବଳରେ ମଣ୍ଡନ ମିଶ୍ରଙ୍କ ଘର ଭିତରକୁ ଯାଇ ଦେଖିଲେ, ମଣ୍ଡନ ମିଶ୍ରେ ମନ୍ତ୍ରବଳରେ ସ୍ୱୟଂ ବ୍ୟାସଦେବଙ୍କୁ ନିମନ୍ତ୍ରଣ କରି ଶ୍ରାଦ୍ଧକ୍ରିୟାରେ ନିମଗ୍ନ ଅଛନ୍ତି । ମଣ୍ଡନ ମିଶ୍ରେ ଜଣେ ସନ୍ନ୍ୟାସୀଙ୍କୁ ଶ୍ରାଦ୍ଧ ସ୍ଥାନରେ ଉପସ୍ଥିତ ଥିବାର ଦେଖି କ୍ରୁଦ୍ଧ ହେଲେ । ଏହାପରେ ଉଭୟଙ୍କ ମଧ୍ୟରେ ଯୁକ୍ତିତର୍କ ଲାଗିଲା । ସ୍ଥିର ହେଲା ଯେ, ଯିଏ ଯୁକ୍ତିତର୍କରେ ପରାସ୍ତ ହେବ ସେ ବିଜେତାର ମତ ଅବଲମ୍ବନ କରିବ ।

Source: Author, Digitized by PPRACHIN, SOA

ଏହି ଯୁକ୍ତିତର୍କ ବେଳେ ମଣ୍ଡନ ମିଶ୍ରଙ୍କ ପତ୍ନୀ 'ସରସବାଣୀ' ମଧ୍ୟସ୍ଥ ହେଲେ । କଥିତ ଅଛି, ସରସବାଣୀ ସ୍ୱୟଂ ସରସ୍ୱତୀଙ୍କ ଅବତାର ଥିଲେ । ଏଣେ ମଣ୍ଡନ ମିଶ୍ର ବ୍ରହ୍ମାଙ୍କର ଓ ଶଙ୍କର ଶିବଙ୍କର ଅବତାର । ଶାସ୍ତ୍ର ବିବାଦ ବହୁଦିନ ପର୍ଯ୍ୟନ୍ତ ଚାଲିଲା । ଅବଶେଷରେ ସରସବାଣୀ ପ୍ରକାଶ କଲେ, ତାଙ୍କର ସ୍ୱାମୀ ମଣ୍ଡନ ମିଶ୍ର ଶାସ୍ତ୍ର ବିବାଦରେ ପରାଜିତ ହୋଇଅଛନ୍ତି । କିନ୍ତୁ ଏହାପରେ ସରସବାଣୀ ତାଙ୍କ ସଙ୍ଗରେ ଶାସ୍ତ୍ର ସମ୍ବନ୍ଧରେ ଯୁକ୍ତିତର୍କ କରିବାକୁ ଶଙ୍କରଙ୍କୁ ଆହ୍ୱାନ ଜଣାଇଲେ । ଶଙ୍କର ଏଥିରେ ସମ୍ମତି ପ୍ରଦାନକଲେ ।

ସରସବାଣୀ ଜାଣିଥିଲେ, ଶଙ୍କର ଆବାଲ୍ୟ ବ୍ରହ୍ମଚାରୀ । ତେଣୁ କାମଶାସ୍ତ୍ର ସଂପର୍କରେ ସେ ସମ୍ପୂର୍ଣ୍ଣ ଅନଭିଜ୍ଞ । ଶଙ୍କରଙ୍କର ଏହି ଦୁର୍ବଳତାର ସୁଯୋଗ ନେଇ ସରସବାଣୀ ତାଙ୍କୁ କାମଶାସ୍ତ୍ର ସମ୍ପର୍କୀୟ ପ୍ରଶ୍ନ କଲେ । ସରସ୍ୱାଣୀଙ୍କ ପ୍ରଶ୍ନର ଉତ୍ତର ଦେବାପାଇଁ ଛଅମାସ ସମୟ ନେଇ ବିଦାୟ ହେଲେ ।

## ଶଙ୍କରଙ୍କ ପରକାୟା ପ୍ରବେଶ

ଶଙ୍କର ଚିନ୍ତିତ ମନରେ ଯାତ୍ରା କରୁଛନ୍ତି, ପଥ ମଧ୍ୟରେ ଦେଖିଲେ । ଜଣେ ରାଜାଙ୍କ ଶବ ସତ୍କାର ପାଇଁ ଶ୍ମଶାନରେ ରଖା-ଯାଇଛି । ସେ ପରକାୟ-ପ୍ରବେଶ ବିଦ୍ୟାବଳରେ ରାଜାଙ୍କ ମୃତ ଶରୀରରେ ପ୍ରବେଶ କଲେ ! ଏଣେ ସ୍ୱଦେହ ରକ୍ଷାର ଭାର ତାଙ୍କର କେତେଜଣ ଶିଷ୍ୟଙ୍କ ହସ୍ତରେ ଅର୍ପଣ କଲେ ।

ମୃତରାଜା ବଞ୍ଚିବା ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ରାଜାଙ୍କୁ ପୁଣି ରାଜ ଉଆସକୁ ନିଆଗଲା । ରାଣୀ ପରମ ସନ୍ତୋଷରେ

Source: Author, Digitized by PPRACHIN, SOA

ତାଙ୍କୁ ଅନ୍ତଃପୁରକୁ ପାଶ୍ରେଟି ନେଲେ । ବର୍ତ୍ତମାନ ରାଜ ଶରୀରରେ ଶଙ୍କର ରାଣୀଙ୍କଠାରୁ କାମକଳା ବିଦ୍ୟା ଶିକ୍ଷା କରିବାକୁ ଲାଗିଲେ ଓ କାମଶାସ୍ତ୍ରରେ ପ୍ରବୀଣ ହୋଇ ଉଠିଲେ ।

କିନ୍ତୁ ରାଜାଙ୍କ ଆଚରଣରେ, ଗତିବିଧିରେ କେତେକ ବିଲକ୍ଷଣ ଦେଖାଦେଲା । ବୁଦ୍ଧିମତୀ ରାଣୀଙ୍କ ଚକ୍ଷୁରୁ ଏହା ବାଦ ପଡ଼ିଲା ନାହିଁ । ସେ ରାଜାଙ୍କୁ ସନ୍ଦେହ କଲେ ଏବଂ ରାଜକର୍ମଚାରୀ-ମାନଙ୍କୁ ଗୋପନରେ ଆଦେଶ ଦେଲେ, ଦ୍ୱାଦଶ ଯୋଜନ ମଧ୍ୟରେ ଥିବା ସକଳ ସ୍ଥାନ ଭ୍ରମଣ କରି ଯଦି କୌଣସି ମୃତ ଶରୀରର ସନ୍ଧାନ ପାଅ, ଅତିଶୀଘ୍ର ତହିଁରେ ଅଗ୍ନି ସଂଯୋଗ କର ।

ରାଣୀଙ୍କ ଆଦେଶକୁ ରାଜକର୍ମଚାରୀମାନେ ଅତି ବିଶ୍ୱସ୍ତ ଭାବରେ ପାଳନ କଲେ । ସେମାନେ ଦ୍ୱାଦଶ ଯୋଜନ ମଧ୍ୟରେ ଥିବା ସମସ୍ତ ଶ୍ମଶାନ, ଗିରିକନ୍ଦର, ଭଗ୍ନମନ୍ଦିର, ନିର୍ଜନ ସ୍ଥାନ ଇତ୍ୟାଦି ତନ୍ନ ତନ୍ନ କରି ଖୋଜି, ଏକ ଗିରିଗହ୍ୱର ମଧ୍ୟରେ ପ୍ରବେଶ କଲେ । ସେଠାରେ ଦେଖିଲେ, ଦଳେ ଶିଷ୍ୟ ଏକ ମୃତ ଶରୀରକୁ ଜଗି ରହିଛନ୍ତି । ତାକୁ ନେଇ ଅଗ୍ନି ସଂଯୋଗ କରିବାକୁ ଗଲାବେଳେ, ଶିଷ୍ୟମାନେ ଏଥିରେ ବାଧା ଦେଲେ । କିନ୍ତୁ ରାଜକର୍ମଚାରୀମାନେ ସେହି ମୃତ ଶରୀରକୁ ବଳାତ୍କାର କରି ସେମାନଙ୍କ ପାଖରୁ ଛଡ଼ାଇ ନେଲେ ।

ବିଶ୍ୱସ୍ତ ଶିଷ୍ୟମାନେ ତଟସ୍ଥ ହୋଇ ରାଜବେଶୀ ଶଙ୍କରଙ୍କ ନିକଟରେ ଉପସ୍ଥିତ ହେଲେ ଏବଂ ସକଳ ବିଷୟ ଜଣାଇଲେ । ଶଙ୍କର କାଳ ବିଳମ୍ବ ନ କରି ଘଟଣା ସ୍ଥଳକୁ ଧାଇଁଲେ । ସେତେବେଳେ ମୃତ ପିଣ୍ଡରେ ଅଗ୍ନି ସଂଯୋଗ କରା ସରିଥାଏ । ଶଙ୍କର ଯୋଗ ବଳରେ ସେହି ଶବ ମଧ୍ୟରେ ପ୍ରବେଶ କରି

Source: Author, Digitized by PPRACHIN, SOA

ନୃସିଂହ ଦେବଙ୍କୁ ସ୍ତୁତି କଲେ । ନୃସିଂହଙ୍କ କୃପାରୁ ତାଙ୍କର କୌଣସି ଅନିଷ୍ଟ ହେଲନାହିଁ ।

ଏହାପରେ ଶଙ୍କର ସୂକ୍ଷ୍ମ ଶରୀରରେ ହସ୍ତିନାପୁର ଅନ୍ତର୍ଗତ 'ବିଦ୍ୟାଳୟ'କୁ ଯାତ୍ରାକଲେ ଓ ସରସବାଣୀଙ୍କୁ ଯୁକ୍ତିତର୍କ ପାଇଁ ଆହ୍ୱାନ ଜଣାଇଲେ ।

ସରସବାଣୀ ବୁଝିଲେ, ଆଉ ଶଙ୍କରଙ୍କୁ ପରାଜିତ କରି ହେବ ନାହିଁ । ଅଶ୍ଳୀଳତା ପ୍ରକାଶ ପାଇବା ଆଶଙ୍କାରେ ସେ ବର୍ତ୍ତମାନ ଶଙ୍କରଙ୍କ ସଙ୍ଗରେ ଯୁକ୍ତିତର୍କ କରିବାକୁ ଇଚ୍ଛା ନ କରି ପରାଜୟ ସ୍ୱୀକାର କଲେ ।

## ଶୃଙ୍ଗାରୀ ମଠ ଶଙ୍କର (ଶୃଙ୍ଗେରୀ ମଠ)

ବର୍ତ୍ତମାନ ଶୃଙ୍ଗଗିରି ଉଦ୍ଦେଶ୍ୟରେ ଯାତ୍ରା କଲେ । ସେଠାରେ ମଧ୍ୟ ତାଙ୍କର ଖ୍ୟାତି ବଢ଼ିବାକୁ ଲାଗିଲା । ଶୃଙ୍ଗଗିରିଠାରେ ଶଙ୍କର ଶୃଙ୍ଗାରୀ ମଠ ପ୍ରତିଷ୍ଠା କଲେ ଓ ମଣ୍ଡନଙ୍କ ପତ୍ନୀ ସରସବାଣୀ (ଅନ୍ୟ ମତରେ ଭାରତୀ)ଙ୍କୁ ସେଠାରେ ରହିବାକୁ କହିଲେ । କାରଣ ସେ ଦେବୀ ସରସ୍ୱତୀଙ୍କର ଅବତାର ଥିଲେ ।

ଶୃଙ୍ଗାରୀ ମଠର ଶିଷ୍ୟମାନେ 'ଭାରତୀ ସଂପ୍ରଦାୟ' ନାମରେ ପରିଚିତ ।

ଶଙ୍କରଙ୍କ ଆଦେଶରେ ସୁରେଶ୍ୱର ନାମକ ଜଣେ ଶିଷ୍ୟ ଶୃଙ୍ଗାରୀ ମଠର ଅଧ୍ୟକ୍ଷ ପଦ ମଣ୍ଡନ କଲେ । ସୁରେଶ୍ୱର ଗୁରୁଦେବ ଶଙ୍କରଙ୍କୁ ଅଦ୍ୱୈତମତ ପ୍ରଚାରରେ ବିଶେଷ ସାହାଯ୍ୟ କରିଥିଲେ ।

Source: Author, Digitized by PPRACHIN, SOA

ଶୃଙ୍ଗେରିଠାରୁ ଶଙ୍କର ମରୁନ୍ଦ, ଗୟା, ମଗଧ ପ୍ରଭୃତି ସ୍ଥାନ ଭ୍ରମଣ କରି ସେଠାରେ ସମସ୍ତଙ୍କୁ ଅଦ୍ୱୈତମତରେ ଦୀକ୍ଷିତ କଲେ । ଏହାପରେ ପ୍ରୟାଗ ଓ ଉଜ୍ଜୟିନୀକୁ ଯାତ୍ରାକଲେ ।

## ଉଜ୍ଜୟିନୀରେ ଶଙ୍କର ଓ ରାଜା ସୁଧନ୍ୱା

ଶଙ୍କରଙ୍କ ଉଜ୍ଜୟିନୀ ବାର୍ତ୍ତା ପାଇ ସେଠାରେ ଥିବା କାପାଳିକମାନେ ତାଙ୍କୁ ତାଙ୍କର ମତ ପ୍ରତିଷ୍ଠାରେ ବାଧା ଦେଲେ । କାପାଳିକମାନେ ଭୈରବଙ୍କ ଉପାସକ ଥିଲେ । ସେମାନଙ୍କ ବ୍ୟୁତ୍ପାତରେ ଅତିଷ୍ଠ ହୋଇ, ସେମାନଙ୍କୁ ଦମନ କରିବା ନିମନ୍ତେ ଶଙ୍କର ଉଜ୍ଜୟିନୀର ରାଜା ସୁଧନ୍ୱାଙ୍କୁ ଅନୁରୋଧ ଜଣାଇଲେ ।

ରାଜା ସୁଧନ୍ୱା ପ୍ରଥମେ ବୌଦ୍ଧ ମତାବଲମ୍ବୀ ଥିଲେ । କିନ୍ତୁ ଭଟ୍ଟପାଦ ପ୍ରମୁଖ ଶାସ୍ତ୍ରଜ୍ଞମାନଙ୍କ ଅଦ୍ଭୁତ ଶକ୍ତିର ପରିଚୟ ଲାଭ କରି ବୈଦିକ ହିନ୍ଦୁଧର୍ମ ଗ୍ରହଣ କରିଥିଲେ ।

ଶଙ୍କରଙ୍କ ବାର୍ତ୍ତା ପାଇ ସୁଧନ୍ୱା ନିଜର ସୈନ୍ୟମାନଙ୍କ ସାହାଯ୍ୟରେ ଉଜ୍ଜୟିନୀରେ ଭୈରବ ଉପାସକ କାପାଳିକମାନଙ୍କୁ ଦମନ କଲେ ।

ଏହାପରେ ଉଜ୍ଜୟିନୀରେ ସ୍ୱୀୟ ଅଦ୍ୱୈତବାଦର ପ୍ରତିଷ୍ଠା ପାଇଁ ଶଙ୍କରଙ୍କ ପକ୍ଷରେ ଆଉ କୌଣସି ଅସୁବିଧା ରହିଲା ନାହିଁ ।

ଶଙ୍କର ଏହିପରି ଭାବରେ ଲୁପ୍ତପ୍ରାୟ ହିନ୍ଦୁଧର୍ମକୁ ପୁନଃପ୍ରତିଷ୍ଠିତ କରିଥିଲେ । ସେ ବିଭିନ୍ନ ସ୍ଥାନ ଭ୍ରମଣ କରି ବୌଦ୍ଧ, କାପାଳିକ, ଶୈବ, ଶାକ୍ତମାନଙ୍କର ମତ ଖଣ୍ଡନ କରି ବ୍ରହ୍ମବାଦର ପ୍ରତିଷ୍ଠା କଲେ ।

Source: Author, Digitized by PPRACHIN, SOA

## ଦ୍ୱାରକାରେ ଶଙ୍କର

ଉଜ୍ଜୟିନୀ ଇତ୍ୟାଦି ଭ୍ରମଣ କରି ସାରିବା ପରେ ଶଙ୍କର ଦ୍ୱାରକାରେ ପହଞ୍ଚିଲେ । ସେ ଦ୍ୱାରକାର ଯାଦବମାନଙ୍କୁ ସ୍ୱମତରେ ଦୀକ୍ଷିତ କଲେ ।

ଅନେକ ଅହଙ୍କାରୀ ବୌଦ୍ଧ ପଣ୍ଡିତ ଶଙ୍କରଙ୍କ ଯୁକ୍ତିରେ ପରାଜିତ ହୋଇ ତାଙ୍କ ଧର୍ମମତ ଗ୍ରହଣ କରିଥିଲେ ।

## ମାତାଙ୍କ ସମ୍ବାଦ

ଶଙ୍କର ଶୃଙ୍ଗେରୀ ମଠରେ ଅବସ୍ଥାନ କରୁଥିବାବେଳେ ସମାଧି ଅବସ୍ଥାରେ ମାତାଙ୍କର ଅସୁସ୍ଥତା ବିଷୟରେ ଅବଗତ ହେଲେ । ସେ ଯୋଗବଳରେ ସହସା ମାତାଙ୍କ ନିକଟରେ ପହଞ୍ଚି ତାଙ୍କର ଚରଣ ବନ୍ଦନା କଲେ । ଦୀର୍ଘକାଳପରେ ପୁତ୍ର ମୁଖ ଦର୍ଶନ କରି ମାତା ଆନନ୍ଦିତା ହେଲେ । ତାପରେ ସେ ମାତାଙ୍କ ନିକଟରେ ଶୂଳପାଣି ସ୍ତବପାଠ କଲେ । ଶୂଳପାଣି (ମହାଦେବ) ଏଥିରେ ପ୍ରୀତ ହୋଇ ତାଙ୍କ ମାତାଙ୍କୁ ଶିବ ଲୋକକୁ ନେଇଯିବା ପାଇଁ ପ୍ରମଥଗଣଙ୍କୁ ପଠାଇଲେ । ମାତ୍ର ସେ ବିଷ୍ଣୁ ଲୋକକୁ ଯିବାକୁ ଇଚ୍ଛିବାରୁ ଶଙ୍କର ହରିଙ୍କୁ ସ୍ତୁତି କଲେ । ନାରାୟଣ ସନ୍ତୁଷ୍ଟ ହୋଇ ମାତାଙ୍କୁ ବିଷ୍ଣୁ ଲୋକରେ ସ୍ଥାନ ଦେଲେ ।

ଏହାପରେ ମାତାଙ୍କ ସ୍ଥୂଳ ଶରୀର ସଂସ୍କାର ପାଇଁ ସେ ଆତ୍ମୀୟ ମାନଙ୍କ ଦ୍ୱାରସ୍ଥ ହେଲେ । କିନ୍ତୁ ଅଭିମାନୀ ବ୍ରାହ୍ମଣମାନେ ଶଙ୍କର କୁଳାଚାର ଲଙ୍ଘନ କରିଛନ୍ତି ବୋଲି ଅଭିଯୋଗ କରି ଶବ ସଂସ୍କାର କାର୍ଯ୍ୟରେ ସହଯୋଗ କଲେ ନାହିଁ । ତେଣୁ ନିଜେ ଶଙ୍କର ନିଜ ହସ୍ତରେ ଏକାକୀ ମାତାଙ୍କ ସଂସ୍କାର ବିଧାନ କରି ଶ୍ରୀକ୍ଷେତ୍ର ଉଦ୍ଦେଶ୍ୟରେ ଯାତ୍ରାକଲେ ।

Source: Author, Digitized by PPRACHIN, SOA

## ଶ୍ରୀକ୍ଷେତ୍ରରେ ଶଙ୍କର

ଶଙ୍କର ଶ୍ରୀକ୍ଷେତ୍ର ଆଗମନ କରି ସେଠାରେ 'ଗୋବର୍ଦ୍ଧନ ମଠ' ସ୍ଥାପନ କଲେ ।

ଶ୍ରୀକ୍ଷେତ୍ରରେ ଗୋବର୍ଦ୍ଧନ ମଠରେ ଋଗ୍‌ବେଦ ପ୍ରଚାର ନିମନ୍ତେ ବ୍ୟବସ୍ଥା ହେଲା । ଏଠାରେ ସେ 'ସନନ୍ଦ' ନାମକ ଶିଷ୍ୟଙ୍କୁ ରଖିଲେ ।

## ଶ୍ରୀ କ୍ଷେତ୍ର ପରେ ମାଧ୍ୟାର୍ଜ୍ଜୁନ ଯାତ୍ରା ଓ ଜଡ଼ଙ୍କୁ ବାକ୍‌ଦାନ

ନୀଳାଚଳ ଶ୍ରୀକ୍ଷେତ୍ର ଧାମ ତ୍ୟାଗକରି ଶଙ୍କର ମାଧ୍ୟାର୍ଜ୍ଜୁନକୁ ଗମନ କଲେ ।

ପଥ ମଧ୍ୟରେ 'ପ୍ରଭାକର' ନାମକ ଜଣେ ବ୍ରାହ୍ମଣଙ୍କ ଗୃହରେ କିଛି ସମୟ ପାଇଁ ବିଶ୍ରାମ ନେଲେ । ଶଙ୍କରଙ୍କ ଅଲୌକିକ ଶକ୍ତି ବଳରେ ପ୍ରଭାକରଙ୍କ ଆଜନ୍ମ ଜଡ଼ ପୁତ୍ର ସହସା ବାକ୍‌ଶକ୍ତି ଲାଭ କଲା । ଶଙ୍କର ଉକ୍ତ ବାଳକଙ୍କୁ ଶିଷ୍ୟ ରୂପେ ଗ୍ରହଣ କଲେ ଓ ତାର ନାମ ରଖିଲେ 'ହସ୍ତାମଳକ' ।

## ମାଧ୍ୟାର୍ଜ୍ଜୁନରୁ କାଞ୍ଚି ଓ ରାଜା ହିମଶୀତଳଙ୍କ ଧର୍ମଗ୍ରହଣ

ଏହାପରେ ଶଙ୍କର ମାଧ୍ୟାର୍ଜ୍ଜୁନ ହୋଇ କାଞ୍ଚି ଧାମକୁ ପ୍ରସ୍ଥାନ କଲେ ।

ସେତେବେଳେ କାଞ୍ଚି ରାଜ୍ୟର ରାଜା 'ହିମଶୀତଳ' ବୌଦ୍ଧ-ମତାବଲମ୍ବୀ ଥିଲେ । ତାଙ୍କର ରାଜସଭା ବୌଦ୍ଧ ପଣ୍ଡିତମାନଙ୍କ ଦ୍ୱାରା ପରିପୂର୍ଣ୍ଣ ଥିଲା । ଶଙ୍କର ସେହି ରାଜସଭାରେ ଉପସ୍ଥିତ ପଣ୍ଡିତମାନଙ୍କ ସଙ୍ଗରେ ଶାସ୍ତ୍ର-ତର୍କ କରିବାକୁ ଚାହିଁଲେ ।

Source: Author, Digitized by PPRACHIN, SOA

ଶଙ୍କରଙ୍କ ଯୁକ୍ତିତର୍କରେ ଅଂଶ ଗ୍ରହଣ କରିବାପାଇଁ ବିଭିନ୍ନ ସ୍ଥାନରୁ ବିଚକ୍ଷଣ ବୌଦ୍ଧ ପଣ୍ଡିତମାନେ ନିମନ୍ତ୍ରିତ ହୋଇ ଆସିଲେ । ବହୁଦିନ ପର୍ଯ୍ୟନ୍ତ ଯୁକ୍ତିତର୍କ ଚାଲିଲା । ପରେ ସମସ୍ତେ ଶଙ୍କରଙ୍କ ଯୁକ୍ତିରେ ପରାସ୍ତ ହୋଇ ତାଙ୍କର ମନ୍ତ୍ର ଗ୍ରହଣ କଲେ । ରାଜା ହିମଶୀତଳ ମଧ୍ୟ ବୌଦ୍ଧଧର୍ମ ତ୍ୟାଗକରି ଶଙ୍କରଙ୍କ ହିନ୍ଦୁ ଅଦ୍ୱୈତମତ ଗ୍ରହଣ କଲେ ।

ଶଙ୍କରଙ୍କ ବିଜୟବୃତ୍ତାନ୍ତ ଶିବକାଶିର ଶ୍ମଶାନେଶ୍ୱର ମନ୍ଦିରର ଦ୍ୱାର ଦେଶରେ ଏବଂ ଉଟବେଙ୍ଗ ଗ୍ରାମସ୍ଥ ଚେରୁକୋଡେରୁଲ୍ଲା ମନ୍ଦିର ଗାତ୍ରରେ ଖୋଦିତ ଅଛି ।

## ବିଭିନ୍ନ ସ୍ଥାନ ଭ୍ରମଣ ଓ ବିଭିନ୍ନ ଅନୁଭୂତି

ଏହାପରେ ଶଙ୍କର ତିରୁପତି, ରାମେଶ୍ୱର ଶୃଙ୍ଗେରି, ଅନନ୍ତ-ଶୟନ ଇତ୍ୟାଦି ସ୍ଥାନ ଭ୍ରମଣ କରି ସ୍ୱମତର ପ୍ରତିଷ୍ଠା କଲେ ।

ଶଙ୍କର କାମରୂପରେ ପଦାର୍ପଣ କରି 'ଅଭିନବ ଗୁପ୍ତ' ନାମକ ଜଣେ ପଣ୍ଡିତଙ୍କୁ ଶାସ୍ତ୍ର ବିଚାରରେ ପରାସ୍ତ କରିଥିଲେ । ଅଭିନବ ଗୁପ୍ତ ଅପମାନିତ ହୋଇ ଶଙ୍କରଙ୍କ ପ୍ରାଣନାଶର ଉପାୟ ଚିନ୍ତା କଲେ । ସେ ଅଭିଚାର ଦ୍ୱାରା ଶଙ୍କରଙ୍କ ଶରୀରରେ ଉତ୍କଟ ଭଗନ୍ଦର ରୋଗ ଉତ୍ପାଦନ କରାଇଲେ । ମାତ୍ର ଶଙ୍କରଙ୍କ ଜଣେ ଶିଷ୍ୟ ସିଦ୍ଧମନ୍ତ୍ର ଜପଦ୍ୱାରା ଗୁରୁଙ୍କୁ ବ୍ୟାଧିମୁକ୍ତ କଲେ ।

ଶଙ୍କର ଯାତ୍ରୀମାନଙ୍କ ମୁଖରୁ କାଶ୍ମୀରର ପ୍ରଶଂସା ଶୁଣି କାଶ୍ମୀର ପରିଦର୍ଶନ ଉଦ୍ଦେଶ୍ୟରେ ଶିଷ୍ୟମାନଙ୍କ ଗହଣରେ ଯାତ୍ରା ଆରମ୍ଭ କଲେ । ପଥରେ ମହାଯୋଗୀ 'ଗୌଡ଼ପଦ ସ୍ୱାମୀ'ଙ୍କ ସଙ୍ଗରେ ତାଙ୍କର ସାକ୍ଷାତ ହେଲା । ଶଙ୍କରଙ୍କ 'ଶିଷ୍ୟ' ଶୁଣି ସେ ପରମ ସନ୍ତୋଷ ଲାଭ କରିଥିଲେ ।

Source: Author, Digitized by PPRACHIN, SOA

କାଶ୍ମୀର ପୀଠରେ ଶାରଦା ଦର୍ଶନ କରିବାକୁ ଗଲାବେଳେ 'ଶୂନ୍ୟବାଣୀ ହେଲା, ଶଙ୍କର ! ତୁମେ କାମକଳା-ଶିକ୍ଷା କରିବା ପାଇଁ ସ୍ତ୍ରୀ-ଭୋଗ କରି ନିଜ ଶରୀରକୁ କଳୁଷିତ କରିଛ । ଆତ୍ମଶୁଦ୍ଧି ନ କଲେ ଏ ମନ୍ଦିରରେ ପ୍ରବେଶ କରି ପାରିବ ନାହିଁ ।' ଶଙ୍କର ଉତ୍ତର ଦେଲେ, ମୁଁ ନିଜ ଶରୀରରେ ସ୍ତ୍ରୀ-ଭୋଗ କରିନାହିଁ । ଭିନ୍ନ ଶରୀରରେ ପ୍ରବିଷ୍ଟ ହୋଇ ଯେଉଁ ପାପକଲି ତାହା ଏହି ଶରୀରର ପ୍ରତି ପ୍ରଯୁଜ୍ୟ ହୋଇ ନ ପାରେ । ଏହି ଯୁକ୍ତିରେ ସନ୍ତୁଷ୍ଟ ହୋଇ ଦେବୀ ଶାରଦା ତାଙ୍କୁ ମନ୍ଦିର ଦର୍ଶନ ପାଇଁ ଅନୁମତି ଦେଲେ ।

ଶଙ୍କର କାଶ୍ମୀର ଦେଶର ବିଖ୍ୟାତ ପଣ୍ଡିତମାନଙ୍କୁ ନିଜ ବିଚାରରେ ପରାସ୍ତ କରି ବଦ୍ରିନାରାୟଣ ଯାତ୍ରା କଲେ । କେଦାରନାଥ ଠାରେ ତାଙ୍କର ପରମାୟୁ ଶେଷ ହୋଇଗଲା ।

ସେତେବେଳେ ଶଙ୍କରଙ୍କୁ ମାତ୍ର ବତିଶ ବର୍ଷ ବୟସ ହୋଇଥିଲା ।

ଶଙ୍କର ବ୍ରହ୍ମସୂତ୍ର ଭାଷ୍ୟ, ଦଶ ଉପନିଷଦ ଭାଷ୍ୟ ପ୍ରଣୟନ କରି ହିନ୍ଦୁଧର୍ମର ମହତ୍ ଉପକାର ସାଧନ କରିଛନ୍ତି । ଏତଦ୍‌ବ୍ୟତୀତ ତାଙ୍କ କୃତ ଆନନ୍ଦ ଲହରୀ, ମୋହମୁଦ୍‌ଗର, ଯତିପଞ୍ଚକ ଆତ୍ମବୋଧ ପ୍ରଭୃତି ଗ୍ରନ୍ଥ ସଂସ୍କୃତ ସାହିତ୍ୟର ଗୌରବ ବର୍ଦ୍ଧନ କରୁଛି ।

ଶଙ୍କର ହିନ୍ଦୁଧର୍ମ, ସଂସ୍କୃତ ଭାଷା ଓ ସମାଜ ସଂସ୍କାର ପାଇଁ ଯେଉଁ ମହାନ୍ କର୍ମକରି ଯାଇଛନ୍ତି, ସେଥିପାଇଁ ଯୁଗେ ଯୁଗେ ପୂଜା ପାଇବେ ।

—o—

Source: Author, Digitized by PPRACHIN, SOA

# ସ୍ୱୟଂ ଶିବ ଶଙ୍କରାଚାର୍ଯ୍ୟ

ଏକ ବିବରଣୀରୁ ପ୍ରକାଶ, ଶଙ୍କରାଚାର୍ଯ୍ୟଙ୍କ ପିତା ଶିବଗୁରୁ କେରଳର ଆଲୱାଇ (ପେରିୟାର) ସହରଠାରୁ ୬ ମାଇଲ ଦୂର 'ଚୂର୍ଣ୍ଣିପୂର' ନଦୀକୂଳସ୍ଥ 'କଲଡ଼ି' ନାମକ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ସେ ପିତାମାତାଙ୍କର କଥା ଅନୁସାରେ ମାଘ ପଣ୍ଡିତଙ୍କ କନ୍ୟା ଆର୍ଯ୍ୟମ୍ବାଙ୍କର ପାଣିଗ୍ରହଣ କରିଥିଲେ ।

ବହୁକାଳ ପର୍ଯ୍ୟନ୍ତ ଶିବଗୁରୁ ଓ ଆର୍ଯ୍ୟମ୍ବାଙ୍କର ସନ୍ତାନସନ୍ତତି ହେଲେ ନାହିଁ ।

ଆର୍ଯ୍ୟମ୍ବା ଶିବଙ୍କୁ ଉପାସନା କରି ପୁତ୍ର ଅଭିଳାଷ ଜ୍ଞାପନ କରିବା ପାଇଁ ସ୍ୱାମୀଙ୍କୁ ଜଣାଇବାରୁ ଶିବଗୁରୁ ତାଙ୍କୁ ସଙ୍ଗରେ ନେଇ ନିକଟ-ବର୍ତ୍ତୀ ବୃଷାଚଳ ନାମକ ଶୃଙ୍ଗ ଉପରେ ଅବସ୍ଥିତ ଶିବକ୍ଷେତ୍ର (ତ୍ରିଚୁର)କୁ ଗଲେ ଓ ଭକ୍ତି ସହକାରେ ଶିବସ୍ତୁତି କଲେ ।

ଶିବଗୁରୁ ଓ ଆର୍ଯ୍ୟମ୍ବାଙ୍କର ଗଭୀର ଭକ୍ତି ଓ ଦୃଢ଼ ବିଶ୍ୱାସରେ ପ୍ରୀତ ହୋଇ ସ୍ୱୟଂ ଶିବ ନିଜେ ରାତିରେ ଉଭୟଙ୍କୁ ଏକ ବୃଦ୍ଧ ବେଶରେ ଦେଖା ଦେଇ ପ୍ରଶ୍ନକଲେ, ହେ ଭକ୍ତ ଦମ୍ପତି ! ବହୁ ସଂଖ୍ୟକ ମୂର୍ଖପୁତ୍ର ଲୋଡ଼ ନା କ୍ଷୀଣାୟୁ ଏକମାତ୍ର ବୁଦ୍ଧିମାନ ଓ ଗୁଣ-ବାନ ପୁତ୍ର ଲୋଡ଼ ? ଏହି ଜଟିଳ ପ୍ରଶ୍ନ ଶିବଗୁରୁ ଓ ଆର୍ଯ୍ୟମ୍ବାଙ୍କୁ

Source: Author, Digitized by PPRACHIN, SOA

ସନ୍ଦେହରେ ପକାଇ ଦେଲ । ସେମାନେ ଏହାର ଉତ୍ତର ଖୋଜ ନପାଇ ପରମେଶ୍ୱରଙ୍କ ଉପରେ ଆତ୍ମସମର୍ପଣ କଲେ ।

ଏହା ଦେଖି ଶିବ ଅତ୍ୟନ୍ତ ଆନନ୍ଦିତ ହୋଇ ନିଜେ ସେମାନଙ୍କର ପୁତ୍ରରୂପେ ଭୂମିଷ୍ଠ ହେବାପାଇଁ ପ୍ରତିଶ୍ରୁତି ଦେଇ କଲ୍ପତରୁ ଫେରଯିବାପାଇଁ ଦମ୍ପତିଙ୍କୁ ଆଦେଶ କଲେ । ଶେଷରେ ସେ ଦୁହିଁଙ୍କ ସ୍ୱପ୍ନ ସତ୍ୟରେ ପରିଣତ ହେଲା । ଯଥା ସମୟରେ ଆର୍ଯ୍ୟମ୍ବା ଗର୍ଭଧାରଣ କଲେ ଓ ବୈଶାଖ ମାସ, ଶୁକ୍ଳପକ୍ଷ ପଞ୍ଚମୀ ତିଥିରେ ପୁନର୍ବସୁ ନକ୍ଷତ୍ରରେ ସ୍ୱୟଂ ଶିବ ଜ୍ୟୋତିର ଆଲୋକସ୍ୱରୂପ ଶଙ୍କର ଆର୍ଯ୍ୟମ୍ବାଙ୍କ ଗର୍ଭରୁ ଭୂମିଷ୍ଠ ହେଲେ ।

ତାଙ୍କର ଜନ୍ମ ମୁହୂର୍ତ୍ତରେ ଧରଣୀ ଓ ପ୍ରକୃତି ଉଭୟେ ଆନନ୍ଦରେ ବିଭୋର ହୋଇ ଉଠିଥିଲେ ।

ସଂସାରରେ ଶଙ୍କରହିଁ ଏକମାତ୍ର ଲଣ୍ଡିତ ମସ୍ତକ ଧାରଣ କରି ସନ୍ନ୍ୟାସ ଗୁଣ, ଲକ୍ଷଣ ଓ କଳାଧାରଣ କରି ଜନ୍ମଗ୍ରହଣ କରିଥିଲେ ।



Source: Author, Digitized by PPRACHIN, SOA

## ଶଙ୍କରାଚାର୍ଯ୍ୟ :

## ଅନ୍ୟ କେତେକ ସମ୍ବାଦ

ବୁଦ୍ଧଦେବଙ୍କ ତିରୋଭାବର ପ୍ରାୟ ବାରଶହ ବର୍ଷ ପରେ, ଶଙ୍କରାଚାର୍ଯ୍ୟ ଏକ ମହାନ ଧର୍ମ ବିପ୍ଳବ ମଧ୍ୟରେ ଜନ୍ମ ଗ୍ରହଣ କରିଥିଲେ । ସେତେବେଳେ ବୌଦ୍ଧଧର୍ମର ନିରୀଶ୍ୱର ବା ଶୂନ୍ୟ ବାଦର ବାହ୍ୟ ଆଡ଼ମ୍ବରର ଆଚାର ଅନୁଷ୍ଠାନରେ ସନାତନ ବୈଦିକ ଧର୍ମ ପ୍ରାୟ ବିଲୁପ୍ତ ଅବସ୍ଥାରେଥିଲା । ବୈଦିକ ଦୃଷ୍ଟି ଧାରାର ପୁନଃ ପ୍ରତିଷ୍ଠା ପାଇଁ ଆଚାର୍ଯ୍ୟ ଶଙ୍କର ଦକ୍ଷିଣ ଭାରତର କେରଳ ପ୍ରଦେଶର 'କାଲାଡ଼ି' ନାମକ ଗ୍ରାମରେ ୭୮୮ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ ।

ଶଙ୍କରଙ୍କ ମାତାଙ୍କ ନାମ ସତୀ ଓ ପିତାଙ୍କ ନାମ ଶିବଗୁରୁ । ମାତା·ପିତା ଉଭୟେ ଶିବ ଭକ୍ତ ଥିଲେ ।

ଶଙ୍କରଙ୍କ ବିଷୟରେ ବହୁ ଅଲୌକିକ ଘଟଣା କୁହାଯାଏ । ସେ ମାତ୍ର ଦୁଇବର୍ଷ ବୟସରେ ବେଦ, ବେଦାନ୍ତ, ଉପନିଷଦ କଣ୍ଠସ୍ଥ କରିଥିଲେ ।

ମାଧବାଚାର୍ଯ୍ୟଙ୍କର ବିଖ୍ୟାତ 'ଶଙ୍କର ଦିଗ୍‌ବିଜୟ' ନାମକ ଗ୍ରନ୍ଥରେ ଉଲ୍ଲେଖ ଅଛି ଯେ, ତାଙ୍କ ମାତା ପୂର୍ଣ୍ଣନଦୀରୁ ପାଣି

Source: Author, Digitized by PPRACHIN, SOA

ଅଣିବାରେ କଷ୍ଟ ହେବାରୁ ସେ ଶିବଙ୍କୁ ସ୍ତୁତି କରି ପୂର୍ଣ୍ଣାନଦୀର ସ୍ରୋତ ପରିବର୍ତ୍ତନ କରି ପାରିଥିଲେ ।

ବିବାହ ପ୍ରସ୍ତାବ ଆସିବାରୁ ଶଙ୍କର ପ୍ରକାଶ କଲେ, ତାଙ୍କର ଅୟୁଷ ମାତ୍ର ଷୋହଳ ବର୍ଷ ; ସେ ଜନ୍ମ ସନ୍ନ୍ୟାସୀ ।

ପରେ ପରେ ମାଁଙ୍କ ଅନୁମତି ଆଣି ସନ୍ନ୍ୟାସୀ ପାଇଁ ସେ 'ଗୋବିନ୍ଦ ପାଦ'ଙ୍କ ପାଖରେ ପହଞ୍ଚିଲେ । ସେ ସେଠାରେ ନିଜର ପରିଚୟ ଦେଇ କହିଲେ, ମୁଁ ପାର୍ଥିବ ନୁହେଁ, ଜଳ ନୁହେଁ, ଆକାଶ ନୁହେଁ, ବାୟୁ ନୁହେଁ, ଇନ୍ଦ୍ରିୟ ନୁହେଁ, ତେଜ ନୁହେଁ, ଦେହ ନୁହେଁ, ଏ ସବୁର ଅତୀତ, ନିର୍ଲିପ୍ତ ଶିବ ସ୍ୱରୂପ ପରମାତ୍ମାର ଏକ ଅଂଶ । ପରିବ୍ରାଜକ ଅବସ୍ଥାରେ ସେ କାଶୀ ଯାତ୍ରା କରିଥିଲେ ।

ତାଙ୍କର ତେଜୋମୟ ପ୍ରତିଭା ସମସ୍ତଙ୍କୁ ମୁଗ୍ଧ କରୁଥିଲା । ତାଙ୍କର ଅନେକ ଶିଷ୍ୟ ହେଲେ । ତାଙ୍କର ପ୍ରଧାନ ଶିଷ୍ୟର ନାମ 'ସନନ୍ଦନପଦ୍ମପାଦ ।'

## ବଦରିକା ଶ୍ରମରେ ଶଙ୍କର .

ଶଙ୍କର ବ୍ୟାସଙ୍କର ବଦରିକାଆଶ୍ରମରେ ପହଁଞ୍ଚିଥିଲେ ଏବଂ ସେଠାରେ ସେ ଶଙ୍କର ପ୍ରସିଦ୍ଧ ବ୍ରହ୍ମସୂତ୍ର ଭାଷ୍ୟ, ଉପନିଷଦ ଭାଷ୍ୟ, ଗୀତା ଭାଷ୍ୟ, ସର୍ବ ବେଦାନ୍ତ ସିଦ୍ଧାନ୍ତ, ସନତ୍ ସୁଜାତୀୟ ଭାଷ୍ୟ ଓ ଅନେକ ଗ୍ରନ୍ଥ ରଚନା କରିଥିଲେ ।

କଥିତ ଅଛି, ନିଜେ ବ୍ୟାସଦେବ ବୃଦ୍ଧ ବେଶରେ ଆବିର୍ଭୁତ ହୋଇ ତାଙ୍କ ରଚନାରେ ପରମ ପ୍ରୀତ ହୋଇ କହିଥିଲେ, ତୁମର ଅନେକ କାମ ବାକି ଅଛି । ତୁମର ପରମାୟୁ ବତିଶ ବର୍ଷ ହେଉ ।

Source: Author, Digitized by PPRACHIN, SOA

ଶଙ୍କର ସତର ବର୍ଷ ବୟସରେ ଭାରତର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଯାତ୍ରା କରି ବହୁ ପଣ୍ଡିତଙ୍କୁ ତର୍କରେ ପରାସ୍ତ କରିଥିଲେ ଓ ବୌଦ୍ଧଧର୍ମର ଖଣ୍ଡନ କରି ସନାତନ ସତ୍ୟଧର୍ମ ବା ହିନ୍ଦୁଧର୍ମର ପୁନଃ ପ୍ରତିଷ୍ଠା କଲେ ।

ଶଙ୍କର ମିଥିଳାର ମାହିଷ୍ମତୀ ନଗରର ଦୁର୍ଦ୍ଧର୍ଷ କର୍ମକାଣ୍ଡୀ ପଣ୍ଡିତ ମଣ୍ଡନ ମିଶ୍ରଙ୍କୁ ପରାସ୍ତ କଲେ । ଯୁକ୍ତି ତର୍କରେ ମଣ୍ଡନ ମିଶ୍ରଙ୍କ ପତ୍ନୀ 'ଭାରତୀ' ମଧ୍ୟସ୍ଥ ହୋଇଥିଲେ । ତାଙ୍କ ମଧ୍ୟସ୍ଥତାରେ ଛଅଦିନ କାଳ ଶାସ୍ତ୍ରଯୁଦ୍ଧ ହେଲା । ସ୍ୱାମୀ ପରାସ୍ତ ହେବା ଦେଖି ଉଭୟ ଭାରତୀ କହିଲେ, କେବଳ ମୋର ସ୍ୱାମୀ ପରାସ୍ତ ହୋଇଛନ୍ତି । ମୁଁ ପରାସ୍ତ ହୋଇନାହିଁ । ଆପଣ ଅର୍ଦ୍ଧ ବିଜୟ ହାସଲ କଲେ । ଏହା କହି ସେ ଶଙ୍କରଙ୍କୁ ତାଙ୍କର ଅଜ୍ଞାତ କେତେକ କାମ ଶାସ୍ତ୍ର ବିଷୟକ ପ୍ରଶ୍ନ କଲେ । ଏହା ଦେଖି ଶଙ୍କର କିଛିଦିନ ସମୟ ନେଇ ମଗଧର ମୃତରାଜା ଅମରକଙ୍କ ପିଣ୍ଡରେ ପ୍ରବେଶ କରି ଗୃହସ୍ଥାଶ୍ରମର ଜ୍ଞାନ ଆହରଣ କଲେ ଓ ତର୍କ ଯୁଦ୍ଧରେ ଉଭୟ ସ୍ୱାମୀ ଓ ସ୍ତ୍ରୀଙ୍କୁ ପରାସ୍ତ କଲେ ।

ତାଙ୍କର ଯୋଗ ବଳରେ ମାତାଙ୍କର ଅନ୍ତିମ ଇଚ୍ଛା ଜାଣିପାରି ମା'ଙ୍କ ପାଖରେ ପହଞ୍ଚିଲେ ଓ ତାଙ୍କୁ ଇଷ୍ଟମୂର୍ତ୍ତି ଦର୍ଶନ କରାଇଲେ । ସେ ତତ୍କାଳୀନ ବହୁ ଧର୍ମ ଗୁରୁଙ୍କୁ ତର୍କରେ ପରାସ୍ତ କରିଥିଲେ ।

ପୁଣ୍ୟ କେଦାରନାଥଠାରେ ବତିଶ ବର୍ଷ ବୟସରେ ଶଙ୍କରଙ୍କ ମୃତ୍ୟୁ ହେଲା ।

ଶଙ୍କର ତାଙ୍କ ଦିଗ୍‌ବିଜୟ କାଳରେ ଚାରୋଟି ମଠ ପ୍ରତିଷ୍ଠା କରିଥିଲେ । ତାହା ନିମ୍ନରେ ଉଲ୍ଲେଖ ହେଲା—

Source: Author, Digitized by PPRACHIN, SOA

❊ ତୁଙ୍ଗ ଭଦ୍ରା ନଦୀକୂଳରେ 'ଶୃଙ୍ଗେରୀ ମଠ' ।

❊ ଦ୍ୱାରକାର ଗୋମତୀ ନଦୀ କୂଳରେ 'ସାରଦା ପୀଠ' ।

❊ ପୁରୀରେ 'ଗୋବର୍ଦ୍ଧନ ମଠ' ।

❊ ବଦ୍ରୀନାଥର ଅଳକାନନ୍ଦା ତୀରରେ 'ଯୋଗୀମଠ' ।

ଶଙ୍କର ପ୍ରଥମେ ଦଶନାମୀ ସଂପ୍ରଦାୟ ସୃଷ୍ଟି କରିଥିଲେ ।

ତାହା ହେଲା—(୧) ତୀର୍ଥ, (୨) ବନ, (୩) ଅରଣ୍ୟ, (୪) ଗିରି, (୫) ପୁରୀ, (୬) ଭାରତୀ, (୭) ପର୍ବତ, (୮) ସାଗର, (୯) ସରସ୍ୱତୀ, ଓ (୧୦) ଆଶ୍ରମ ।

ଏହା ହେଲା ଦଶଟି ଦଶନାମୀ ସମ୍ପ୍ରଦା ପଦବୀ ।



Source: Author, Digitized by PPRACHIN, SOA

# ଶଙ୍କରଙ୍କ ଧର୍ମ ଦର୍ଶନ

ଶଙ୍କର ପ୍ରବର୍ତ୍ତିତ ଦର୍ଶନକୁ 'ଅଦ୍ୱୈତବାଦ' ବୋଲି କୁହାଯାଏ ।

ବେଦର ଜ୍ଞାନକାଣ୍ଡକୁ ବେଦାନ୍ତ କୁହାଯାଏ । ଚତୁର୍ବେଦର ଅନ୍ତର୍ଭୁକ୍ତ ତତ୍ତ୍ୱମସି, ଅହଂବ୍ରହ୍ମାସ୍ମି, ପ୍ରଜ୍ଞାନଂ ବ୍ରହ୍ମ ଓ ଅୟମାତ୍ମା ବ୍ରହ୍ମ । ଶଙ୍କର କହନ୍ତି—"ବ୍ରହ୍ମ ସତ୍ୟ ଜଗତ୍‌ ମିଥ୍ୟା । ଏହି ନିତ୍ୟ ଅନିତ୍ୟ ବେଦଜ୍ଞାନର ଅନୁଭୂତି ହିଁ ମଣିଷ ଜୀବନର ସାର୍ଥକତା । ଦେହାଦିରେ ଆତ୍ମାବୋଧ ଭ୍ରାନ୍ତ । ଐକାତ୍ମ୍ୟ ଜ୍ଞାନ ବ୍ୟତିରେକେ ଅଜ୍ଞାନର ବିନାଶ ହୁଏ ନାହିଁ । ବସ୍ତୁର ସିଦ୍ଧି, ଜ୍ଞାନଦ୍ୱାରା ସାଧିତ ହୁଏ । ଆତ୍ମା ଉପଲବ୍ଧି ପାଇଁ ତୀବ୍ର ଆକାଂକ୍ଷା ଓ ନିଷ୍କାମ କର୍ମଦ୍ୱାରା ଚିତ୍ତଶୁଦ୍ଧି ଘଟେ । ଚିତ୍ତଶୁଦ୍ଧି ପରେ ପରମ ଜ୍ଞାନ ଆସେ ।"

'ମଣିରତ୍ନମାଳା'ରେ ସେ ଶିଷ୍ୟମାନଙ୍କୁ ଉତ୍ତର ଛଳରେ ଯାହା ପ୍ରକାଶ କରିଥିଲେ, ତାହା ପ୍ରଣିଧାନ ଯୋଗ୍ୟ ।

ପ୍ରଶ୍ନ: ମୋର ଶରଣ କଣ ?

ଉତ୍ତର : ଈଶ୍ୱରଙ୍କର ପାଦପଦ୍ମ ସ୍ୱରୂପ ପ୍ରଶସ୍ତ ନୌକା ।

ପ୍ରଶ୍ନ : ବଦ୍ଧ କିଏ ?

ଉ : ଯେ ବିଷୟାସକ୍ତ ।



Source: Author, Digitized by PPRACHIN, SOA

ପ୍ର   ସଂସାର ବନ୍ଧନ କିପରି ଲୋପ ପାଏ ?

ଉ   ବେଦ ନିହିତ ଆତ୍ମାଜ୍ଞାନ ଦ୍ୱାରା ।

ପ୍ର   ଗରିବ, ଦରିଦ୍ର କିଏ ?

ଉ   ଯାହାର ବିଶାଳ ବିଷୟ-ଆକାଂକ୍ଷା ।

ପ୍ର   ଗୁରୁ କିଏ ?

ଉ   ହିତ ଉପଦେଷ୍ଟା ।

ପ୍ର   ତୀର୍ଥ କଣ ?

ଉ   ନିଜର ଶୁଦ୍ଧମନ

ପ୍ର   ମୂର୍ଖ କିଏ ?

ଉ   ବିବେକହୀନ ।

ପ୍ର : ଧର୍ମ କିଏ ?

ଉ   ପରୋପକାରୀ ।

ପ୍ର   ଦିବ୍ୟବ୍ରତ କଣ ?

ଉ   ସମସ୍ତଙ୍କ ନିକଟରେ ବିନୟଭାବ ।

ପ୍ର   ଅନନ୍ତ ଦୁଃଖକର କଣ ?

ଉ   ନିଜର ମୂର୍ଖତା ।

ପ୍ର   କିଏ ଉପାସ୍ୟ ?

ଉ   ଗୁରୁ, ଦେବତା ଓ ବୟୋବୃଦ୍ଧଗଣ ।

ପ୍ର   ମାଙ୍କ ପରି ସୁଖଦା କିଏ ?

ଉ : ସୁବିଦ୍ୟା ।

ପ୍ର : କର୍ମ କଣ ?

ଉ : ଯାହା ଈଶ୍ୱର ପ୍ରୀତିକର ।

ପ୍ର : ସତ୍ୟ କଣ ?

ଉ   ସର୍ବଦା ଜୀବଗଣରେ ହିତ ସାଧନ ।

Source: Author, Digitized by PPRACHIN, SOA

ମାଂସ, ରସୁଣ, ପିଆଜ ଖାଇଲେ ଭଗବତ୍ ପ୍ରାପ୍ତି ହୁଏ ନାହିଁ; ଏକଥା ଶଙ୍କର ଅସ୍ୱୀକାର କରିଛନ୍ତି ।

କଥିତ ଅଛି, ଭାରତରେ ଯେତେବେଳେ ଉପନିଷଦ୍ ବର୍ଣ୍ଣିତ ଅଦ୍ୱୈତବାଦର ଧାରା ଅତିକ୍ଷୀଣ ହୋଇ ଆସୁଥିଲା, ଧର୍ମର ସଂସ୍ଥାପନ ପାଇଁ ଆଚାର୍ଯ୍ୟ ଶଙ୍କର ପୁଣ୍ୟଭୂମି ଭାରତବର୍ଷରେ ଆବିର୍ଭୂତ ହୋଇଥିଲେ ।

ଶଙ୍କରଙ୍କ ଗୁରୁଦେବ, ଆଚାର୍ଯ୍ୟ ଗୋବିନ୍ଦପାଦ ତାଙ୍କୁ ଆଦେଶ ଦେଇଥିଲେ, ଯୁଗର ପ୍ରୟୋଜନରେ ତୁମେ ସଂସାରକୁ ଆସିଛ । ଅଦ୍ୱୈତ ଆତ୍ମଜ୍ଞାନର ପ୍ରଚାର କର । ପୁଣି ଭାରତବର୍ଷର ଲୁପ୍ତତୀର୍ଥ ଓ ଦେବଦେବୀଙ୍କର ପୁନରୁଦ୍ଧାର କର ।

ଧର୍ମ ରାଜ୍ୟରେ, ବିଭିନ୍ନ ମତାବଲମ୍ବୀ ସାଧୁସନ୍ନ୍ୟାସୀମାନଙ୍କ ମଧ୍ୟରେ ଅନେକ ଅନାଚାର ପଶିଛି । ତାର ସଂସ୍କାର କର । ଭାରତବର୍ଷର ଆଧ୍ୟାତ୍ମ ଜୀବନକୁ ପୁନର୍ଗଠନ କର । ତୁମେ କାଶୀ ଯାଇ ପ୍ରଭୁ ବିଶ୍ୱନାଥଙ୍କ ଆଦେଶ ନେଇ ତୁମର ଦାୟିତ୍ୱ ନିର୍ବାହ କର ।

ଆଚାର୍ଯ୍ୟ ଶଙ୍କର ଗୁରୁ ଗୋବିନ୍ଦ ପାଦଙ୍କ ଆଦେଶକୁ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ ।

ଆଚାର୍ଯ୍ୟ ଶଙ୍କର ଅଦ୍ୱୈତବାଦର ମର୍ମ ବିଶ୍ଳେଷିତ କରି କହିଲେ, ପୃଥିବୀରେ 'ବ୍ରହ୍ମ' ହିଁ ଏକମାତ୍ର ସତ୍ୟ । ଜଗତ ମିଥ୍ୟା ଅଟେ । ଏ ଜଗତ ସ୍ୱପ୍ନପରି ଅଳୀକ, ଜୀବ ହିଁ ବ୍ରହ୍ମ, ଜଡ଼ ମିଥ୍ୟା ଅଟେ ।

Source: Author, Digitized by PPRACHIN, SOA

ତରୁଣ ଶଙ୍କରଙ୍କ ତେଜସ୍ୱୀ ଭାଷଣ ଶୁଣି ସାଧୁ, ମୂର୍ଖ, ପଣ୍ଡିତ ତଥା ଜନସାଧାରଣ ଦଳ ଦଳ ହୋଇ ଆସି ତାଙ୍କ ଧର୍ମ ସଙ୍ଘରେ ଯୋଗ ଦେଲେ ।

କିନ୍ତୁ କାଶୀର ମଣିକର୍ଣ୍ଣିକା ଘାଟରେ ସ୍ୱୟଂ ଅନ୍ନପୂର୍ଣ୍ଣା ତାଙ୍କୁ ବିଧବା ତରୁଣୀ ରୂପେ ଦେଖା ଦେଇ କଥା ପ୍ରସଙ୍ଗରେ ତାଙ୍କ ମନରେ ଶକ୍ତି ତତ୍ତ୍ୱର ବିଶ୍ୱାସ ଉପୁଜାଇଲେ । ଫଳରେ ବ୍ରହ୍ମବାଦୀ ଶଂକର ଶକ୍ତି ତତ୍ତ୍ୱକୁ ମଧ୍ୟ ଗ୍ରହଣ କରି ନେଇ ଶିବ ଓ ଶକ୍ତିର ଅଭିନ୍ନତା ପ୍ରତିପାଦନ କଲେ ।

ବାସ୍ତବ କ୍ଷେତ୍ରରେ ଦେଖାଯାଏ, ପୁରୁଷ ଓ ପ୍ରକୃତି ପରସ୍ପର ପରସ୍ପରର ପରିପୂରକ । ଶାସ୍ତ୍ର, ପୁରୁଷକୁ ସେତେବେଳେ ଯାଇ ପୂର୍ଣ୍ଣ ମନେକରେ, ଯେତେବେଳେ ପୁରୁଷ ନାରୀ ସଂଯୁକ୍ତ ହୁଏ । ନାରୀ ଅଭାବରେ ପୁରୁଷ ଅପୂର୍ଣ୍ଣ ରହେ ।

ବୃହଦାରଣ୍ୟକ ଉପନିଷଦ (୧।୪।୧।୩)ରେ କୁହାଗଲା, "ସର୍ବପ୍ରଥମେ ଆତ୍ମାହିଁ ଥିଲା । ତାହିଁ ପୁରୁଷ ସଦୃଶ ଥିଲା । ସେ ଚାରିଆଡ଼େ ଦେଖିଲା, ସବୁଠି ନିଜ ବ୍ୟତୀତ ଅନ୍ୟ କିଛି ନାହିଁ । ଏକା ଏକା ତାକୁ ଭଲ ଲାଗିଲା ନାହିଁ । ସେ ନିଜକୁ ଦୁଇଭାଗରେ ବିଭକ୍ତ କଲା । ସେ ଦୁହେଁ ପତି ଓ ପତ୍ନୀ ହେଲେ । ଏଇ ହେତୁ ସ୍ତ୍ରୀ ଓ ପୁରୁଷ ପ୍ରତ୍ୟେକ ଅନ୍ୟର ଅଧାଅଂଶ ଭଳି ।"

ଶତପଥ ବ୍ରାହ୍ମଣରେ କୁହାଯାଇଛି, 'ଜାୟା ପୁରୁଷର ଅର୍ଦ୍ଧାଂଶ ।' ବ୍ରହ୍ମବୈବର୍ତ୍ତ ପୁରାଣରେ କୁହାଯାଇଛି, 'ଭଗବାନ ପ୍ରକୃତି ଦେବୀଙ୍କ ସହାୟତାରେହିଁ ଶକ୍ତିମାନ । ନର ଓ ନାରୀ, ପୁରୁଷ ଓ ପ୍ରକୃତି ଦୁହେଁ ଅଲଗା ଅଲଗା ଦେଖାଯାଉଥିଲେ ହେଁ ପ୍ରକୃତରେ ଉଭୟେ ଏକ ।'

Source: Author, Digitized by PPRACHIN, SOA

ଭାରତୀୟ ସଂସ୍କୃତି ଅନୁଯାୟୀ କେବଳ ନରନାରୀ କାହିଁକି, ପଶୁପକ୍ଷୀ-ବୃକ୍ଷଲତା-ପୁରୁଷ ସ୍ତ୍ରୀ ନିର୍ବିଶେଷରେ ସମସ୍ତଙ୍କ ଭିତରେ ଭିତରେ ଆତ୍ମା ବିଦ୍ୟମାନ । ଯେଉଁ ବ୍ୟକ୍ତି ଏହି ସମତାର ତତ୍ତ୍ୱ-ଜ୍ଞାନ ଅନୁଭବ କରନ୍ତି, ସେ ପଣ୍ଡିତ ।

ପରମାଣୁ ଯୁଗରେ ବର୍ତ୍ତମାନର ବିଶ୍ୱରେ, ବୈଜ୍ଞାନିକମାନେ ପ୍ରତିପାଦିତ କରି ଅଛନ୍ତି ଯେ, ପ୍ରତ୍ୟେକ ପରମାଣୁ ଭିତରେ ପଜିଟିଭ୍ (ଧନାତ୍ମକ) ଓ ନେଗେଟିଭ୍ (ଋଣାତ୍ମକ) ଶକ୍ତିରେ ଉଦ୍ଭୂତ ନିହିତ ।

ଆଚାର୍ଯ୍ୟ ଶଙ୍କର ଏହାହିଁ ପ୍ରତିପାଦନ କରି ଅଛନ୍ତି ।



Source: Author, Digitized by PPRACHIN, SOA

# ରାମାନୁଜ

ଦକ୍ଷିଣ ଭାରତର ଆଉ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ, ବୈଷ୍ଣବ ସମାଜର ଅଗ୍ରଗଣ୍ୟ ଶ୍ରୀରାମାନୁଜାଚାର୍ଯ୍ୟ, ଶୁକ୍ଳ ପଞ୍ଚମୀତିଥିରେ ୧୦୧୭ ଚୈତ୍ର ମାସରେ ଜନ୍ମଗ୍ରହଣ କରିଥିଲେ ।

ରାମାନୁଜ କାଞ୍ଚିପୁରର ବିଦ୍ୟା ଓ ଅଦ୍ୱୈତବାଦୀ ଆଚାର୍ଯ୍ୟ ଯାଜନ ପ୍ରକାଶଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । କିନ୍ତୁ ଗୁରୁଶିଷ୍ୟର ପାଣ୍ଡିତ୍ୟରେ ଆନନ୍ଦିତ ହେବା ବଦଳରେ କ୍ରୁଦ୍ଧ ହେଲେ । ଏପରିକି ଗୁରୁ ଶିଷ୍ୟଙ୍କୁ ହତ୍ୟା କରିବାର ପରିକଳ୍ପନା ମଧ୍ୟ କଲେ ।

ରାମାନୁଜଙ୍କ ପାରିବାରିକ ଜୀବନ ଅଶାନ୍ତିପୂର୍ଣ୍ଣ ଥିଲା । ମହାତ୍ମା ମହାପୂର୍ଣ୍ଣ ତାଙ୍କର ଗୁରୁ ହେଲେ । ଦିନେ ସେ ନ ଥିବା ଅବସ୍ଥାରେ ତାଙ୍କ ସ୍ତ୍ରୀ ଗୁରୁଦେବଙ୍କ ପ୍ରତି ଅବଜ୍ଞା ପ୍ରକାଶ କରିବା ଦେଖି, ସେ ସଂସାର ପ୍ରତି ବିତସ୍ପୃହ ହୋଇ ସନ୍ନ୍ୟାସ ଗ୍ରହଣ କରିଥିଲେ ।

ରାମାନୁଜ ପରିବ୍ରାଜକ ଅବସ୍ଥାରେ ସମଗ୍ର ଭାରତ ଭ୍ରମଣ କରି ବହୁ ପଣ୍ଡିତଙ୍କୁ ପରାସ୍ତ କରି ସ୍ୱୀୟ ବିଶିଷ୍ଟା ଦ୍ୱୈତମତର ପ୍ରତିଷ୍ଠା କଲେ । ପୁରୀର ବିଖ୍ୟାତ 'ଏମାରମଠ' ସେ ପ୍ରତିଷ୍ଠା କରିଥିଲେ । ୧୧୩୭ ଖ୍ରୀଷ୍ଟାବ୍ଦରେ, ମାଘ ଶୁକ୍ଳ ଦଶମୀ ଦିନ ସେ ଇହଧାମ ତ୍ୟାଗ କଲେ ।

Source: Author, Digitized by PPRACHIN, SOA

ରାମାନୁଜଙ୍କ ଜୀବନ ବୈଚିତ୍ର୍ୟମୟ । ବହୁ ଦୁର୍ଦ୍ଦିନରେ ମଧ୍ୟ ସେ ସ୍ୱୀୟ ମତବାଦ ପ୍ରଚାର କରିବାପାଇଁ ଭୁଲି ନ ଥିଲେ ।

ସେ କହନ୍ତି, ମୁକ୍ତି ଫଳରେ ଜୀବ ଏକାବେଳକେ ବ୍ରହ୍ମରେ ମିଶିଯାଏ ନାହିଁ । ଜୀବ ହେଲା ଭଗବାନଙ୍କର ନିତ୍ୟଦାସ । ତା’ ପକ୍ଷରେ ଶ୍ରୀ ଭଗବାନଙ୍କର ନିତ୍ୟ ଦାସହିଁ ହେଲା ପ୍ରକୃତ ମୁକ୍ତି । ଏ ଦାସ୍ୟରେ ସୀରର୍ବଚ୍ଛିନ୍ନ ଆନନ୍ଦ ବର୍ଦ୍ଧମାନ । ଏଥିରେ ପରମ ମୁକ୍ତି ରହିଛି । କାରଣ ଜୀବ ସ୍ୱରୂପରେ ଭଗବାନଙ୍କର ଦାସ ।

ଏହି ଭଗବତ୍ ଦାସରୂପ ନିଜସ୍ୱରୂପରୁ ବିଚ୍ୟୁତ ହୋଇ, ସେ ଦୁଃଖ ପାଏ ।

ଯେଉଁମାନେ ମୁକ୍ତିର ଉପାୟ ଭଗବତ୍ ଶରଣାଗତି ଭିନ୍ନ ଅନ୍ୟ କିଛି ମନେ କରନ୍ତି, ସେମାନଙ୍କୁ ବର୍ଜନ କର । ଯେଉଁମାନେ ଶରଣାଗତିକୁ ମୁକ୍ତିର ଉପାୟ ବୋଲି କହନ୍ତି, ସେମାନଙ୍କ ସଙ୍ଗକର ।

ରାମାନୁଜ ଓ ଶଙ୍କରଙ୍କ ଲକ୍ଷ୍ୟ ଏକ, ଏକ ଈଶ୍ୱର ପାଖରେ ଶରଣାଗତ ।

ରାମାନୁଜ ପନ୍ଥୀମାନେ ଖାଦ୍ୟପେୟ ଆଚରଣକୁ ମୁଖ୍ୟ ସ୍ଥାନ ଦିଅନ୍ତି । ତାଙ୍କ ମତରେ ମଣିଷର ମନକୁ ସଂଯମ କଲେ, ଶୁଦ୍ଧକଲେ ଭଗବତ୍ ପ୍ରାପ୍ତି ହୋଇଥାଏ । ସାତ୍ତ୍ୱିକ ଭୋଜନରେ ଭଗବତ୍ ପ୍ରାପ୍ତି ଘଟେ ।

ଶଙ୍କର କହନ୍ତି—ସୋଽହଂ
ରାମାନୁଜ କହନ୍ତି—ଜୀବ ଓ ଶିବ ସମାନ ନୁହେଁ ।
ଜୀବ ଭଗବାନଙ୍କର ଦାସ ।

Source: Author, Digitized by PPRACHIN, SOA

ଅଦ୍ୱୈତବାଦର ପ୍ରବର୍ତ୍ତକ ଆଚାର୍ଯ୍ୟ ଶଙ୍କର ତିନୋଟି ସ୍ଥାନ ଉପରେ ତାଙ୍କ ସିଦ୍ଧାନ୍ତକୁ ଉପସ୍ଥାପନ କରିଥିଲେ । ସେହି ସ୍ଥାନ ତ୍ରୟୀ ହେଲେ 'ପ୍ରସ୍ଥାନତ୍ରୟୀ' । ଏହି ପ୍ରସ୍ଥାନତ୍ରୟୀ ତିନୋଟି ଗ୍ରନ୍ଥ । ତାହାହେଲା— ୧-ଉପନିଷଦ, ୨-ବ୍ରହ୍ମସୂତ୍ର ଓ ୩-ଭଗବଦ୍‌ଗୀତା ।

ପ୍ରସ୍ଥାନତ୍ରୟୀର ବ୍ୟାଖ୍ୟା ମାଧ୍ୟମରେ ଶଙ୍କର ପ୍ରତିପାଦନ କଲେ ଯେ, ବ୍ରହ୍ମ ସର୍ବମୟ, ଜୀବ ଓ ବ୍ରହ୍ମ ଅଭିନ୍ନ ଏବଂ ଜଡ଼ ଜଗତ ମିଥ୍ୟା । ଜଗତ୍‌ର ଅନୁଭବ ଓ ଜୀବର ବିଭିନ୍ନତା ମାୟା ।

ଅଦ୍ୱୈତବାଦର ପ୍ରଚାର ଫଳରେ ଭକ୍ତିବାଦ ମଉଳିଯିବାକୁ ବସିଲା । ଜୀବ ଯଦି ସ୍ୱୟଂ ବ୍ରହ୍ମ, ତେବେ ଭକ୍ତି କରିବ କିଏ ? ନିଜକୁ ନିଜେତ ଆଉ ଭକ୍ତି କରିହୁଏ ନାହିଁ । ଉପାସ୍ୟ ଓ ଉପାସକ ପୃଥକ୍ ହେଲେସିନା ଉପାସନାର-ଆବଶ୍ୟକତା ଉପଲବ୍ଧି କରିହୁଏ ।

କିନ୍ତୁ ପ୍ରେମ ଓ ବିଶ୍ୱାସର ରାଜ୍ୟ ହେଉଛି ଭକ୍ତି, ସେଠାରେ ଜ୍ଞାନର ଗୌରବ ନାହିଁ ।

ତେବେ ଶଙ୍କରଙ୍କ ସିଦ୍ଧାନ୍ତକୁ ଖଣ୍ଡନ କରିବା ସହଜ ନୁହେଁ ।

ଠିକ୍ ସମୟରେ ଆବିର୍ଭୂତ ହେଲେ ରାମାନୁଜ । ସେ କହିଲେ, ତତ୍ତ୍ୱ ଏକ ନୁହେ, ତିନି । ତାହାହେଲା— ୧-ଈଶ୍ୱର ବା ବ୍ରହ୍ମ । ୨-ଚିତ୍ ବା ଜୀବନ । ୩-ଅଚିତ୍ ବା ଜଗତ ।

ଚିତ୍ ଓ ଅଚିତ୍ ଈଶ୍ୱରଙ୍କ ଠାରୁ ପୃଥକ୍ ନୁହେ । କାରଣ ହେଲେ ଏକମାତ୍ର ଈଶ୍ୱର ସ୍ୱତନ୍ତ୍ର, ଅନ୍ୟ ଦୁଇ ତତ୍ତ୍ୱ ଈଶ୍ୱରାଧୀନ ।

ଏହିପରି ଭାବରେ ରାମାନୁଜ ଅଦ୍ୱୈତବାଦକୁ ବିଶେଷିତ କରି ବିଶିଷ୍ଟା ଦ୍ୱୈତବାଦ ପ୍ରତିଷ୍ଠା କଲେ ।

—୦—

Source: Author, Digitized by PPRACHIN, SOA

୮

# ଆଚାର୍ଯ୍ୟ ଶଙ୍କର ଓ
# ଦେବୀ ଅନ୍ନପୂର୍ଣ୍ଣା

ଆଚାର୍ଯ୍ୟ ଶଙ୍କର ତାଙ୍କ ଗୁରୁଦେବ ଗୋବିନ୍ଦପାଦଙ୍କ ଆଜ୍ଞାରେ କାଶୀଧାମକୁ ଯାତ୍ରାକରି ତାଙ୍କ ଧର୍ମମତର ବ୍ୟାଖ୍ୟା କରିବାକୁ ଲାଗିଲେ । ଉଦାର କଣ୍ଠରେ ସେ ଘୋଷଣା କଲେ, 'ବ୍ରହ୍ମହିଁ ଏକମାତ୍ର ସତ୍ୟ । ଦୃଶ୍ୟ ଜଗତ ମିଥ୍ୟା ଓ ଅଳୀକ ଅଟେ । ଜୀବହିଁ ବ୍ରହ୍ମ ।'

ଅଦ୍ୱୈତବାଘ ଶଙ୍କର ଅଦ୍ୱୈତବାଦର ବ୍ୟାଖ୍ୟା ଚରମକୁ ଉଠାଇଦେଇ ଘୋଷଣାକଲେ, ନିର୍ଗୁଣ ବ୍ରହ୍ମରେ ଶକ୍ତିର ସ୍ଥାନନାହିଁ ।

ଥରେ ଗଙ୍ଗାରେ ମଣିକର୍ଣ୍ଣିକା ଘାଟରେ ସ୍ନାନକରିବା ପାଇଁ ଶଙ୍କର ଶିଷ୍ୟମାନଙ୍କ ଗହଣରେ ଯାତ୍ରା କରୁଥିଲେ । ପଥ ମଧ୍ୟରେ ଦେଖିଲେ, ଏକ ସଦ୍ୟ ବିଧବା ରମଣୀ ତାର ମୃତ ପତିକୁ କୋଳରେ ଧରି ରୋଦନ କରୁଛି । ରାସ୍ତାରେ ବସିପଡ଼ି ସେ ତାର ପତିର ଶବ ସତ୍କାର ପାଇଁ ପଥିକମାନଙ୍କୁ ଭିକ୍ଷା କରୁଛି ।

ସଦ୍ୟ ବିଧବା ଜଣକ ରାସ୍ତା ଅବରୋଧକରି ବସିଥିବା ଦେଖି ଶଙ୍କର କହିଲେ, ମା' ! ଶବଟିକୁ ଟିକଏ ଆଡ଼େଇ ରଖ । ତାହାହେଲେ ଆମେ ରାସ୍ତା ଉପରେ ଗତାଗତ କରି ପାରିବୁ ।

Source: Author, Digitized by PPRACHIN, SOA

କିନ୍ତୁ ସଦ୍ୟ ବିଧବା ତରୁଣୀଟି ଶଙ୍କରଙ୍କ କଥାରେ କାନ ଦେଲା ନାହିଁ ।

ଏହା ଦେଖି ଶଙ୍କରାଚାର୍ଯ୍ୟ ପୁଣି ତାକୁ ରାସ୍ତା ଦେବାକୁ ଅନୁରୋଧ କଲେ ।

ବିଧବା ତରୁଣୀଟି କର୍କଶ କଣ୍ଠରେ କହିଲା, ମୋତେ କାହିଁକି ଅନୁରୋଧ କରୁଛ ? ଶବକୁ କହିଲେ ସେ ଆପେ ଆଡ଼େଇ ହୋଇଯିବ ।

ଶଙ୍କର କହିଲେ, "ମା' ! ତୁମେ ଏପରି ଅସମ୍ଭବ କଥା କହୁଛ କାହିଁକି ? ଶବ କେବେ କ'ଣ ଆପଣା ଇଚ୍ଛାରେ ସ୍ଥାନ ବଦଳାଇ ପାରିବ ?"

ବିଧବା ତରୁଣୀ ଦୃଢ଼ କଣ୍ଠରେ କହିଲେ, "ଶକ୍ତିଶୂନ୍ୟ ବ୍ରହ୍ମ ଜଗତକର୍ତ୍ତା ବୋଲି ଆପଣତ ମୁକ୍ତ କରୁଛନ୍ତି । ଏହି ପ୍ରାଣୀହୀନ, ଶକ୍ତିହୀନ ଶବ କାହିଁକି ନିଜକୁ ଘୁଞ୍ଚାଇ ଦେଇ ପାରିବ ନାହିଁ ?"

ଏହା କହି ବିଧବା ତରୁଣୀ ଓ ଶବ ଉଭୟେ ଅନ୍ତର୍ଦ୍ଧାନ ହୋଇଗଲେ ।

ଶଙ୍କର ଧ୍ୟାନସ୍ଥ ହୋଇ ବୁଝିଲେ, ଏହି ଲୀଳାର ନାୟିକା କାଶୀର ଅଧିଷ୍ଠାତ୍ରୀ ଦେବୀ ସ୍ୱୟଂ ଅନ୍ନପୂର୍ଣ୍ଣା ।

ଏହା ପରେ ପରେ ଶଙ୍କର ହିନ୍ଦୁ ଧର୍ମର ସବୁ ଦେବଦେବୀଙ୍କୁ ବିଶ୍ୱାସ କଲେ ଓ ସେମାନଙ୍କର ପୂଜା ଉପାସନା କରିବାକୁ ଲାଗିଲେ । ଶକ୍ତି ଉପରେ ତାଙ୍କର ବିଶ୍ୱାସ ସ୍ଥାପିତ ହେଲା । ତାଙ୍କ ଦ୍ୱାରା ରଚିତ ବହୁନ ଦେବଦେବୀଙ୍କ ସ୍ତୁତି ପ୍ରାର୍ଥନାରୁ ଏହା ଜଣାଯାଏ ।

Source: Author, Digitized by PPRACHIN, SOA

ଭବାନୀ ସ୍ତୋତ୍ରରେ ସେ ଦେବୀ ଭବାନୀଙ୍କ ପ୍ରତି ଭକ୍ତି ନିବେଦନ କରିଛନ୍ତି । ସେହିପରି "ସୌନ୍ଦର୍ଯ୍ୟ ଲହରୀ"ରେ ଶ୍ରୀବିଦ୍ୟାର ପୁନରୁଦ୍ଧାର କରି ଅଛନ୍ତି, ମୀନାକ୍ଷୀ ସ୍ତୋତ୍ରରେ ସେ ଦେବୀମୀନାକ୍ଷୀଙ୍କୁ ଶବ୍ଦବ୍ରହ୍ମମୟୀ, ଜ୍ୟୋତିର୍ମୟୀ, ବାଗ୍‌ମୟୀ, ନିତ୍ୟାନନ୍ଦମୟୀ ବୋଲି ସମ୍ବୋଧନ କରି ଅଛନ୍ତି ।

ସୌନ୍ଦର୍ଯ୍ୟଲହରୀ ପରି 'ଲଳିତା ତ୍ରିଶତୀଭାଷ୍ୟ' ଆଚାର୍ଯ୍ୟ ଶଙ୍କରଙ୍କ ଅନ୍ୟ ଏକ ସାର୍ଥକ ସୃଷ୍ଟି ରୂପେ ବିବେଚିତ । ଲଳିତାଙ୍କ ଉଦ୍ଦେଶ୍ୟରେ ସେ ପ୍ରକାଶ କରିଛନ୍ତି—ତୁମେ ସ୍ତ୍ରୀ ଅଟ, ତୁମେ ପୁଣି ପୁରୁଷ ଅଟ ।

ଶଙ୍କର ତାଙ୍କର ବ୍ରହ୍ମସୂତ୍ର ଭାଷ୍ୟରେ ମଧ୍ୟ ଦେବୀ ବା ଶକ୍ତି ତତ୍ତ୍ୱ ପ୍ରତିପାଦନ କରି ଅଛନ୍ତି ।

ଏଥିରୁ ଜଣାଯାଏ ଯେ, ବ୍ରହ୍ମବାଦୀ ଶଙ୍କର ଶକ୍ତି ବିରୋଧୀ ହେବା ଦୂରେ ଥାଉ, ପ୍ରଧାନ ଦେବୀ ଭକ୍ତ ପାଲଟି ଯାଇଥିଲେ । ଶାକ୍ତମାନେ ତାଙ୍କୁ ତନ୍ତ୍ର ପ୍ରସାରର ଏକ ସ୍ତମ୍ଭ ରୂପେ ଗଣନା କରିଥାନ୍ତି ।



Source: Author, Digitized by PPRACHIN, SOA

# ଶଙ୍କରାଚାର୍ଯ୍ୟଙ୍କ ରଚନାବଳୀ

ଶଙ୍କରାଚାର୍ଯ୍ୟ ମାତ୍ର ବତିଶ ବର୍ଷ ବୟସର ସୀମାମଧ୍ୟରେ ନିମ୍ନଲିଖିତ ଗ୍ରନ୍ଥ ରଚନା କରିଥିବା ଜଣାଯାଏ—

ପ୍ରସ୍ଥାନତ୍ରୟୀର ବ୍ୟାଖ୍ୟା ଅର୍ଥାତ୍ ଉପନିଷଦ
ବ୍ରହ୍ମସୂତ୍ର ଓ ଗୀତାର ବ୍ୟାଖ୍ୟା
ଉପଦେଶ ସହସ୍ରୀ
ବିବେକ ଚୂଡ଼ାମଣି
ଅପରୋକ୍ଷ୍ୟ ଅନୁଭୂତି
ସୌନ୍ଦର୍ଯ୍ୟ ଲହରୀ
ଭଜ ଗୋବିନ୍ଦମ୍
ମୀନାକ୍ଷୀ ସ୍ତୋତ୍ର
ଭବାନୀ ସ୍ତୁତି
ଲଳିତା ତ୍ରିଶତି ଭାଷ୍ୟ
ପ୍ରପଞ୍ଚସାର
ସରସ୍ୱତୀ ସ୍ତୋତ୍ର
ଶିବାଷ୍ଟକମ୍, ଅନ୍ନପୂର୍ଣ୍ଣାସ୍ତୋତ୍ର
ଗଙ୍ଗା ସ୍ତୋତ୍ର
କାଳିକା ସ୍ତୋତ୍ର
ଆତ୍ମବୋଧ
ଆତ୍ମନାତ୍ମ ବିବେକ
ନିର୍ବାଣ ଷଟ୍କ
ରତ୍ନମାଳିକା
ପ୍ରଶ୍ନୋତ୍ତର
ମଣିରତ୍ନମାଳା
ଦଶକ ହସ୍ତାମଳକମ୍ ବାଲ୍ୟକୃତି
ଆତ୍ମଜ୍ଞାନ କଥନମ୍
ତତ୍ତ୍ୱୋପଦେଶ
ସ୍ତୁତି-ଜଣାଣ-ଭଜନ ପ୍ରଭୃତି ।

—❊—

Source: Author, Digitized by PPRACHIN, SOA

# ଶଙ୍କରଙ୍କ ଶିଷ୍ୟ :
# ଆଚାର୍ଯ୍ୟ ପଦ୍ମପାଦ

ଓଡ଼ିଶାର ପୁରୁଷୋତ୍ତମ କ୍ଷେତ୍ରକୁ ବିଭିନ୍ନ ଧର୍ମ ସଂପ୍ରଦାୟ ଓ ମତବାଦର ସାଧୁ ସନ୍ନ୍ୟାସୀମାନେ ଆସିଛନ୍ତି । ସେଉଁମାନେ ଆସି ଶ୍ରୀକ୍ଷେତ୍ରରେ ମଠ ଓ ଅନୁଷ୍ଠାନମାନ ସ୍ଥାପନ କରିଗଲେ, ସେହି ମଠ ଓ ଅନୁଷ୍ଠାନମାନଙ୍କରୁ ଉକ୍ତ ସାଧୁ ସନ୍ନ୍ୟାସୀମାନଙ୍କର ଆଗମନର ବାର୍ତ୍ତା ମିଳିଥାଏ ।

ହିନ୍ଦୁ ସଂସ୍କୃତିର ମହାନ ପୁରୋଧା ଓ ହିନ୍ଦୁଧର୍ମ ସଂସ୍ଥାପକ ଆଚାର୍ଯ୍ୟ ଶଙ୍କର ଶ୍ରୀକ୍ଷେତ୍ରରେ ଗୋବର୍ଦ୍ଧନ ମଠ ପ୍ରତିଷ୍ଠା କରିଥିଲେ । କଥିତ ଅଛି — ଶଙ୍କର ପୁରୀରେ ଅବସ୍ଥାନ କରି ଶ୍ରୀ ଜଗନ୍ନାଥଙ୍କ ମନ୍ଦିରରେ ମହାପ୍ରସାଦ ପ୍ରଚଳନ କରିଥିଲେ । ଓଡ଼ିଶାରେ ବୌଦ୍ଧ-ଧର୍ମର ବହୁଳ ପ୍ରଚାର ଦେଖି, ତା' ବିରୁଦ୍ଧରେ ପ୍ରଚାର କରିଥିଲେ ଓ ଶୈବଧର୍ମର ପ୍ରତିଷ୍ଠା ନିମନ୍ତେ ଗୋବର୍ଦ୍ଧନ ପୀଠ ସ୍ଥାପନ କଲେ ।

ଗୋବର୍ଦ୍ଧନ ପୀଠରେ ଶଙ୍କରଙ୍କ ଆରାଧ୍ୟ ଦେବତା ଜଗନ୍ନାଥ ଓ ଭୈରବୀ ବିମଳାଙ୍କର ମୂର୍ତ୍ତି ଅଛନ୍ତି । ଏତଦ୍‌ବ୍ୟତୀତ ଭୁବନେଶ୍ୱରୀ, ମହାଦେବ ମନ୍ଦିର ଅଛି । ଗୋବର୍ଦ୍ଧନ ଗୋପାଳ କୃଷ୍ଣମୂର୍ତ୍ତି ପ୍ରତ୍ୟହ ପୂଜା ପାଉଛନ୍ତି ।

Source: Author, Digitized by PPRACHIN, SOA

ପୁରୀର ଶଙ୍କରାଚାର୍ଯ୍ୟ ଗାଦିରେ ପ୍ରଥମେ ଶଙ୍କରାଚାର୍ଯ୍ୟ 'ଆଚାର୍ଯ୍ୟ ପଦ୍ମପାଦ'ଙ୍କୁହିଁ ଗାଦିର ଅଧ୍ୟକ୍ଷ କରିଥିଲେ । ଆଚାର୍ଯ୍ୟ ପଦ୍ମପାଦ ହେଉଛନ୍ତି, ଶଙ୍କରଙ୍କର ପ୍ରଥମ ଶିଷ୍ୟ । ପଦ୍ମପାଦଙ୍କ ପରେ କ୍ରମଶଃ ଶୂଳପାଣି, ନାରାୟଣ, ବିଦ୍ୟାରଣୀୟ, ବାମଦେବ, ପଦ୍ମନାଭ, ଜଗନ୍ନାଥ, ମଧୁରେଶ୍ୱର, ଗୋବିନ୍ଦ, ଶ୍ରୀଧର, ମାଧବାନନ୍ଦ ଇତ୍ୟାଦି ସନ୍ନ୍ୟାସୀ ନାମଧାରଣ କରି ୧୮୩ ଜଣ ଶଙ୍କରାଚାର୍ଯ୍ୟ ମଠାଧୀଶ ଭାବରେ ରହିଲେ । ତାପରେ ଶିବ (୧୮୯୪-୧୮୭୦ ଖ୍ରୀ:), ଲୋକନାଥ (୧୮୭୦-୧୮୮୩ ଖ୍ରୀ:) ଦାମୋଦର (୧୮୮୩-୧୮୯୮ ଖ୍ରୀ) ମଧୁସୂଦନ (୧୮୯୮-୧୯୨୬ ଖ୍ରୀ:) ଭାରତୀକୃଷ୍ଣ (୧୯୨୬-୧୯୬୦ ଖ୍ରୀ) ଏବଂ ଶେଷରେ ସ୍ୱାମୀ ନିରଞ୍ଜନ ଦେବ ତୀର୍ଥଜୀ ମହାରାଜ ୧୯୬୦ ଖ୍ରୀଷ୍ଟାବ୍ଦରୁ ଏ ପର୍ଯ୍ୟନ୍ତ (୧୯୮୫) ଗୋବର୍ଦ୍ଧନ ପୀଠର ଅଧ୍ୟକ୍ଷ ଭାବରେ କାର୍ଯ୍ୟ କରି ଆସୁ ଅଛନ୍ତି । ବର୍ତ୍ତମାନ ନିରଞ୍ଜନ ତୀର୍ଥ ସ୍ୱାମୀଜୀଙ୍କର ଶଙ୍କର ଗାଦି ସଂଖ୍ୟା ୧୪୪ ।

ଆଲୋଚକମାନଙ୍କ ମତରେ ଆଦିଶିଷ୍ୟ ପଦ୍ମପାଦ ନଥିଲେ ।

ଆଚାର୍ଯ୍ୟ ଶଙ୍କର ଯେଉଁ ବତିଶ ବର୍ଷକାଳ ଜୀବନରକ୍ଷା କରି-ଥିଲେ, ତାହା ମଧ କରି ପାରି ନଥାନ୍ତେ ! ଏ ସଂପର୍କରେ ଆଚାର୍ଯ୍ୟ ଶଙ୍କରଙ୍କ ଜୀବନୀରୁ ନିମ୍ନଲିଖିତ ବିବରଣୀ ମିଳିଥାଏ—

"ଆଚାର୍ଯ୍ୟ ଶଙ୍କର ମଗଧର ଅନ୍ତଃପାତି ମାହିଷ୍ମତୀ ନଗରର ଶ୍ରେଷ୍ଠ ପଣ୍ଡିତ ମଣ୍ଡନ ମିଶ୍ରଙ୍କୁ ଧର୍ମ ସଂପର୍କୀୟ ଆଲୋଚନା ଓ ଯୁକ୍ତିରେ ପରାସ୍ତ କରି ଦାକ୍ଷିଣାତ୍ୟ ଗମନ କରିଥିଲେ । ସେହି ସମୟରେ ମହାରାଷ୍ଟ୍ରରେ ଶୈବ୍ୟ ଓ କାପାଳିକମାନେ ବହୁ ସଂଖ୍ୟାରେ ବସବାସ କରୁଥିଲେ ।

Source: Author, Digitized by PPRACHIN, SOA

ଶୈବ୍ୟମାନେ ଶିବ ଉପାସନା କରି ନିଜ ନିଜକୁ ବିଶିଷ୍ଟ ପଣ୍ଡିତ ବୋଲି ବିଜ୍ଞାପିତ କଲବେଳେ, କାପାଳିକମାନେ ନିଜକୁ ମହାତ୍ମା ବୋଲି ପ୍ରଚାର କରୁଥିଲେ । କାପାଳିକମାନେ ଦ୍ୱୈତ ମତବାଦୀ ଥିଲେ ।

ଆଚାର୍ଯ୍ୟ ଶଙ୍କର ନିଜର ଅଦ୍ୱୈତ ମତବାଦ ଦ୍ୱାରା ଦ୍ୱୈତ ମତକୁ ଖଣ୍ଡନ କରି, କାପାଳିକମାନଙ୍କର ଅଧିକାର ପତନ କରାଉଥିଲେ ।

## ଶଙ୍କରଙ୍କ ପ୍ରାଣ ରକ୍ଷା

ସେହି ସମୟରେ ଉଗ୍ର ଭୈରବ ନାମରେ ଜଣେ କାପାଳିକ ଶଙ୍କରଙ୍କୁ ବଳି ଦେବାକୁ ମନସ୍ଥ କଲା । ତେଣୁ ସେ ପ୍ରଥମେ ଆସି ଶଙ୍କରଙ୍କ ଶିଷ୍ୟତ୍ୱ ଗ୍ରହଣ କଲା । ପରେ ପରେ ବହୁ କାପାଳିକ ଆସି ଶଙ୍କରଙ୍କର ଶିଷତ୍ୱ ଗ୍ରହଣ କଲେ ଓ ତାଙ୍କର ବିଶ୍ୱାସର ପାତ୍ରହୋଇ ରହିଲେ ।

ଉଗ୍ରଭୈରବ ଶଙ୍କରଙ୍କ ପାଖରେ କିଛିଦିନ ରହିବା ପରେ ଜାଣିଗଲା ଯେ, ଶଙ୍କର ନି ସନ୍ଧ୍ୟା କରନ୍ତି ଓ ଯୋଗ ଧ୍ୟାନରେ କିଛି ସମୟ ଅତିବାହିତ କରନ୍ତି । ଏକଦା ଶଙ୍କର ଯୋଗଧ୍ୟାନରେ ବସି-ଥିଲା ବେଳେ ଉଗ୍ରଭୈରବ ଏକ ତୀକ୍ଷ୍ଣ ଖଡ୍ଗ ଧରି ଶଙ୍କରଙ୍କୁ ବଳି ଦେବା ସକାଶେ ଅଗ୍ରସର ହେଲା । ଏହି ସମୟରେ ଶଙ୍କରଙ୍କ ପାଖରେ କୌଣସି ଶିଷ୍ୟ ନଥିଲେ । ସେହି ସମୟକୁ ସବୁଠାରୁ ଉପଯୁକ୍ତ ସମୟ ମନେ କରି ଉଗ୍ରଭୈରବ ମନ୍ତ୍ର ପାଠକଲା ଓ ଶଙ୍କରଙ୍କ ଉପରକୁ ଖଡ୍ଗ ଉତ୍ତୋଳନ କଲା ।

Source: Author, Digitized by PPRACHIN, SOA

ଠିକ୍ ଏହି ସମୟରେ ଶିଷ୍ୟ ପଦ୍ମପାଦ ଘଟଣା ସ୍ଥଳରେ ପ୍ରବେଶ କଲେ ଓ ଉଗ୍ରଭୈରବର ନୃଶଂସ କାର୍ଯ୍ୟ ଦେଖି ସହସା ତାକୁ ହତ୍ୟାକରି ଶଙ୍କରାଚାର୍ଯ୍ୟଙ୍କର ପ୍ରାଣ ରକ୍ଷା କଲେ ।

ଆଚାର୍ଯ୍ୟ ପଦ୍ମପାଦଙ୍କର ପୂର୍ବନାମ ଥିଲା 'ସନନ୍ଦନ' । ସେ ଦାକ୍ଷିଣାତ୍ୟର ଚୋଳ ପ୍ରଦେଶରେ ଜନ୍ମ ଗ୍ରହଣ କରିଥିଲେ । ଆଚାର୍ଯ୍ୟ ଶଙ୍କରଙ୍କର ମଧ୍ୟ ଜନ୍ମସ୍ଥାନ ଥିଲା ଦକ୍ଷିଣ ଭାରତରେ । ସେ କେରଳର 'କାଲଡ଼ି' ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ ।

ଶଙ୍କରଙ୍କ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ସନନ୍ଦନ ତାଙ୍କ ପାଖରୁ ଶିଷ୍ୟତ୍ୱ ଗ୍ରହଣ କରିଥିଲେ ।

ସନନ୍ଦନଙ୍କ ଗୁରୁଭକ୍ତି ଥିଲା ଅନନ୍ୟ ସାଧାରଣ । ଏକଦା ନଦୀର ଅପର ପାର୍ଶ୍ୱରୁ ଗୁରୁଙ୍କର ଆହ୍ୱାନ ଶୁଣିବା ମାତ୍ରକେ ସେ ନଦୀ ପାର ହୋଇ ତାଙ୍କ ପାଖକୁ ଚାଲିଗଲେ । କୁହାଯାଏ, ସେ ସମୟରେ ନଦୀ ପୂର୍ଣ୍ଣଗର୍ଭା ଥିଲା । ସେ ନଦୀ ଜଳରେ ପାଦ ଦେବା-ମାତ୍ରକେ, ତାଙ୍କ ପାଦତଳେ ପଦ୍ମଫୁଲମାନ ଫୁଟିଉଠିଲା । ପ୍ରତ୍ୟେକ ପଦ୍ମ ଉପରେ ପାଦ ପକାଇ ସେ ନଦୀ ପାର ହୋଇଥିଲେ ।

ଆଶ୍ଚର୍ଯ୍ୟର କଥା, ପଦ୍ମ ଫୁଲମାନେ ସନନ୍ଦନଙ୍କ ଶରୀରର ଭାର ସମ୍ଭାଳିବାକୁ ସମର୍ଥ ହେଲେ । ପ୍ରତି ପଦକ୍ଷେପରେ ପଦ୍ମଫୁଟାଇ ନଦୀ ପାର ହୋଇ, ସେ ଗୁରୁ ଶଙ୍କରଙ୍କ ପଦ ବନ୍ଦନା କରିଥିଲେ । କୁହାଯାଏ, ନଦୀପାର ହେଲା ବେଳେ ପାଦତଳେ ପଦ୍ମ ଫୁଟିଥିଲା ବୋଲି ତାଙ୍କ ନାଁ ହେଲା 'ପଦ୍ମପାଦ' ।

ପଦ୍ମପାଦ ଅଲୌକିକ ଶକ୍ତିର ଅଧିକାରୀ ଥିଲେ । ତଥାପି ସେ ଆଚାର୍ଯ୍ୟ ଶଙ୍କରଙ୍କୁ ଆନ୍ତରିକ ଭକ୍ତି ପ୍ରଦର୍ଶନ କରୁଥିଲେ

Source: Author, Digitized by PPRACHIN, SOA

ତାଙ୍କର ଅଟଳ ଭକ୍ତି ଦେଖି ସ୍ୱୟଂ ଆଚାର୍ଯ୍ୟ ଶଙ୍କର ବିସ୍ମିତ ହୋଇଥିଲେ । ପଦ୍ମପାଦ ଶଙ୍କରଙ୍କର ଅତି ପ୍ରିୟ ଶିଷ୍ୟ ଭାବରେ ପରିଗଣିତ ହେଉଥିଲେ ।

## ଶୃଙ୍ଗେରୀ ମଠରେ ରଚିତ 'ପଞ୍ଚପାଦିକା'

ମହାରାଷ୍ଟ୍ରରୁ ବାହାରି ଶଙ୍କରାଚାର୍ଯ୍ୟ ଆହୁରି ଦକ୍ଷିଣକୁ ଗମନକଲେ । ସେ 'ତୁଙ୍ଗଭଦ୍ରା' ନଦୀ ତୀରରେ ସାରଦାଦେବୀଙ୍କ ମନ୍ଦିର ପ୍ରତିଷ୍ଠା କରି ଦେବୀ ସରସ୍ୱତୀଙ୍କର ଆରାଧନା କରିଥିଲେ । ଏହି ମନ୍ଦିର ସହିତ ସେ ଯେଉଁ ମଠ ପ୍ରତିଷ୍ଠା କରିଥିଲେ ତାର ନାମ 'ଶୃଙ୍ଗେରୀ' ।

ପଦ୍ମପାଦ ଆଚାର୍ଯ୍ୟ ଶଙ୍କରଙ୍କ ସଙ୍ଗରେ ଶୃଙ୍ଗେରୀ ମଠରେ ଅବସ୍ଥାନ କରୁଥିଲେ । ଏହି ଅବସ୍ଥାନ କାଳରେ ଆଚାର୍ଯ୍ୟ ପଦ୍ମପାଦ 'ପଞ୍ଚପାଦିକା' ନାମକ ନିବନ୍ଧ ରଚନା କରିଥିଲେ । ଏହି ଗ୍ରନ୍ଥ ୧୮୯୧ ମସିହାରେ କାଶୀ ବିଜୟନଗର ସିରିଜରେ ମୁଦ୍ରିତ ହୋଇଛି, ଏହା ଏକ ନିବନ୍ଧ ଗ୍ରନ୍ଥ । ଏଥିରେ ବେଦାନ୍ତ ତତ୍ତ୍ୱର ବ୍ୟାଖ୍ୟା କରାଯାଇଛି ।

## ପଦ୍ମପାଦଙ୍କର 'ଭାଗ୍ୟବାର୍ତ୍ତିକ'

ଶୃଙ୍ଗେରୀ ମଠରେ ଅବସ୍ଥାନ କାଳରେ ଆଚାର୍ଯ୍ୟ ପଦ୍ମପାଦ, ଗୁରୁଦେବ ଶଙ୍କରାଚାର୍ଯ୍ୟଙ୍କର ଅନୁମତି ନେଇ ତୀର୍ଥଭ୍ରମଣରେ ଚାଲିଗଲେ । ତାଙ୍କ ସଙ୍ଗରେ ସେ ନିଜରଚିତ 'ଭାଗ୍ୟ ବାର୍ତ୍ତିକ ଗ୍ରନ୍ଥ' ମଧ୍ୟ ନେଇଗଲେ । ସେ ଏହି ଗ୍ରନ୍ଥକୁ ନିଜର ମାମୁଁଙ୍କ ଘରେ ରଖି ରାମେଶ୍ୱର ଗମନ କଲେ ।

ପଦ୍ମପାଦଙ୍କର ମାତୁଳ ଥିଲେ 'ପ୍ରଭାକର' ମତାବଲମ୍ବୀ ।

Source: Author, Digitized by PPRACHIN, SOA

ପଦ୍ମପାଦ ରାମେଶ୍ୱର ଯାଇଥିଲବେଳେ ମାମୁଁଙ୍କର ବୃନ୍ଧବାଧ ହେଲା ଓ ଆଚାର୍ଯ୍ୟ ପଦ୍ମପାଦଙ୍କର 'ଦ୍ୱଗ୍ୟବାର୍ତ୍ତିକ' ଭସ୍ମୀଭୂତ ହେଲା ।

ଏହି ଗ୍ରନ୍ଥ ତାଙ୍କର ମାମୁଁ ଜାଣି ଶୁଣି ପୋଡ଼ିଦେଇଥିଲେ ବୋଲି କେତେକ ସ୍ଥାନରେ ଉଲ୍ଲେଖ ଅଛି ।

ପଦ୍ମପାଦ ତୀର୍ଥଭ୍ରମଣରୁ ଫେରି ଆସି ଶୁଣିଲେ, ତାଙ୍କ ଗ୍ରନ୍ଥ ପୋଡ଼ି ଯାଇଛି । ସେ ଏଥିପାଇଁ ମନସ୍ତାପ କଲେ ଓ ଆଉଥରେ ସେହିଭଳି ଗ୍ରନ୍ଥ ରଚନା କରିବାକୁ ସ୍ଥିର କଲେ । କଥିତ ଅଛି, ପଦ୍ମପାଦ ଆଉ ଏକ 'ଦ୍ୱଗ୍ୟବାର୍ତ୍ତିକ' ଗ୍ରନ୍ଥ ରଚନା କରୁଥିବା ଶୁଣି ତାଙ୍କୁ ଖାଦ୍ୟରେ ବିଷ ପ୍ରୟୋଗ କରାଯାଇଥିଲା । ଫଳରେ ସେ ଉନ୍ମାଦ ଅବସ୍ଥା ପ୍ରାପ୍ତହେଲେ । ସେ ସେଠାରୁ ଫେରି ଗୁରୁଙ୍କ ଆଗରେ ସମସ୍ତ କଥା ବ୍ୟକ୍ତ କରିବାରୁ ଗୁରୁଦେବ ଶଙ୍କରାଚାର୍ଯ୍ୟ ପ୍ରକାଶ କଲେ ଯେ, ଗ୍ରନ୍ଥ ରଚନାପରେ ଥରେ ସେ ସମୁଦାୟ ଗ୍ରନ୍ଥ ତାଙ୍କ ଆଗରେ ପଢ଼ି ଶୁଣାଇଥିଲେ । ସେ ସମସ୍ତ ତାଙ୍କର ସ୍ମରଣ ଅଛି । ସଂଗେ ସଂଗେ ଶଙ୍କରାଚାର୍ଯ୍ୟ 'ଦ୍ୱଗ୍ୟବାର୍ତ୍ତିକା'ର ସବୁ ପଦ ଆବୃତ୍ତି କଲେ ଓ ପଦ୍ମପାଦ ତାକୁ ଲେଖିଗଲେ । ଏ ବିଷୟ 'ଶଙ୍କର ବିଜୟ' ଗ୍ରନ୍ଥର ୧୬୭-୧୭୦ ଶ୍ଳୋକରେ ଉଲ୍ଲେଖ ଅଛି ।

## ପୁରୀର ମହାପ୍ରସାଦ ଓ ପଦ୍ମପାଦ

ଶ୍ରୀମନ୍ଦିରର ସମାଚାରରେ ଉଲ୍ଲେଖ ଅଛି ଯେ, ଆଚାର୍ଯ୍ୟ ପଦ୍ମପାଦ ଶ୍ରୀମନ୍ଦିରର ମହାପ୍ରସାଦକୁ ସାମାନ୍ୟ ଭୋଗ ବୋଲି ମନେ କରୁଥିଲେ ।

ଏକଦା ଶ୍ରୀ ମନ୍ଦିରରେ ଭୋଗ ଲାଗିଲା ବେଳେ ସେ ଦେଖିଲେ ତାଙ୍କର ଆରାଧ୍ୟ ଦେବତା ଶ୍ରୀକୃଷ୍ଣ ବାଳଗୋପାଳ ରୂପ ଧାରଣ କରି

Source: Author, Digitized by PPRACHIN, SOA

ବଢ଼ା ହୋଇଥିବା ପ୍ରସାଦ ଭୋଜନ କରୁଛନ୍ତି । ସେଦିନଠାରୁ ସେ ଶ୍ରୀମନ୍ଦିର ଭୋଗକୁ 'ମହାପ୍ରସାଦ' ବୋଲି ସ୍ୱୀକାର କଲେ ।

## ରତ୍ନସିଂହାସନରେ ଶଙ୍କର ଓ ପଦ୍ମପାଦଙ୍କ ପ୍ରତିମୂର୍ତ୍ତି

ଶ୍ରୀଜଗନ୍ନାଥଙ୍କ ରତ୍ନ ସିଂହାସନରେ ଆଚାର୍ଯ୍ୟ ଶଙ୍କର ଓ ଆଚାର୍ଯ୍ୟ ପଦ୍ମପାଦଙ୍କ ପ୍ରତିମୂର୍ତ୍ତି ଥିବା ବିଷୟ 'ମାଦଳା ପାଞ୍ଜି'ରେ ଉଲ୍ଲେଖ ଅଛି ।

ଗଜପତି ଦିବ୍ୟସିଂହ ଦେବ ସିଂହାସନ ମରାମତି କଲାବେଳେ ଏହି ମୂର୍ତ୍ତିମାନଙ୍କୁ ବାହାରକୁ କାଢ଼ି ନେଇଥିଲେ ଏବଂ ମରାମତି ପରେ ପୁନଃ ସ୍ଥାପନ କରିଥିଲେ । ଉଲ୍ଲେଖ ଅଛି—

'ଦିବ୍ୟସିଂହ ଦେବ—ଶକାବ୍ଦ ୧୬୨୨ରେ ବଡ଼ ଦେଉଳରେ ଚୂନ ଦେଲେ । ରତ୍ନସିଂହାସନ କାଢ଼ି ବସାଇଲେ । ଏଥିରୁ ଶଙ୍କରାଚାର୍ଯ୍ୟଙ୍କୁ ପଦ୍ମାଚାର୍ଯ୍ୟଙ୍କୁ ବାହାର କରି ଦକ୍ଷିଣ ଘରେ ରଖିଥିଲେ । ପୁନଶ୍ଚ କେତେଦିନ ଉତ୍ତାରୁ ଏହାଙ୍କୁ ନେଇ ସିଂହାସନେ ବିଜେ କରାଇଲେ । ବୈକୁଣ୍ଠେ ଗର୍ଜିଲେ, ଏ ମହାରାଜା ଭୋଗକଲେ ୧୮ ବର୍ଷ ।

---

# ଶଙ୍କରାଚାର୍ଯ୍ୟ : ବିଶ୍ୱରୂପ ବିତର୍କ ଓ ବିଚାରପତି 'ଭାରତୀ'

ବିଶ୍ୱ ପ୍ରସିଦ୍ଧ ଶଙ୍କରାଚାର୍ଯ୍ୟ ଓ ବିଚକ୍ଷଣ ପଣ୍ଡିତ ମଣ୍ଡନ ମିଶ୍ରଙ୍କ ମଧ୍ୟରେ ଶାସ୍ତ୍ର ପ୍ରତିଯୋଗିତା ଚାଲିଥିଲା । ଉଭୟ ପକ୍ଷ ନିଜ ନିଜ ମତରେ ଦୃଢ଼ ଥିଲେ । ନିଜ ମତବାଦ ସମକ୍ଷରେ ସେମାନେ ଶାସ୍ତ୍ର ପୁରାଣରୁ ବିଭିନ୍ନ ଯୁକ୍ତି ବାଢ଼ି ସ୍ୱମତ ପ୍ରତିଷ୍ଠା କରିବାକୁ ଉଦ୍ୟମୀ ଥିଲେ ।

ଏହିପରି ଦୁଇଜଣ ବିଦ୍ୱାନ ପଣ୍ଡିତଙ୍କ ଶାସ୍ତ୍ର ଆଲୋଚନାର ବିଷୟର ବିବେଚନା କରି, କାହାମତ ଦୃଢ଼ ଓ କାହାମତ ଦୁର୍ବଳ ତାହା ନିରପେକ୍ଷ ଭାବରେ ଘୋଷଣା କରିବାକୁ ଯେଉଁ ବିଦୁଷୀ ନାରୀଙ୍କୁ ବିଚାରକ ହୋଇଥିଲା, ତାଙ୍କର ନାମ 'ଭାରତୀ' ।

ଭାରତୀ ସକଳ ଶାସ୍ତ୍ରରେ ଅସୀମ ବିଦ୍ୱତ୍ତା ହାସଲ କରିଥିଲେ ।

'ଭାରତୀ' ସୋନନଦୀ ତୀରବର୍ତ୍ତୀ ବିଷ୍ଣୁମିତ୍ର ନାମକ ଜଣେ ବ୍ରାହ୍ମଣ ପଣ୍ଡିତଙ୍କ ଏକମାତ୍ର କନ୍ୟାଥିଲେ । ବିଷ୍ଣୁମିତ୍ର ନିଜ କନ୍ୟାକୁ ବେଦ, ଦର୍ଶନ, କାବ୍ୟ ଓ ବ୍ୟାକରଣ ଶିକ୍ଷାରେ ଧୁରୀଣ କରିଥିଲେ ।

Source: Author, Digitized by PPRACHIN, SOA

ଭାରତୀଙ୍କ ମାତାଙ୍କ ନାମ ସୁଭଦ୍ରା । ସେ ମଧ୍ୟ ପଣ୍ଡିତା ଥିଲେ, ତାଙ୍କର ନ୍ୟାୟ ଶାସ୍ତ୍ରରେ ଗଭୀର ପ୍ରବେଶ ଥିଲା । ଭାରତୀ ମାତାଙ୍କ ନିକଟରୁ ନ୍ୟାୟ ଶାସ୍ତ୍ର ଶିକ୍ଷା ଲାଭ କରି ଅଳ୍ପକାଳ ମଧ୍ୟରେ ପ୍ରସିଦ୍ଧି ଲାଭ କଲେ ।

ସମସ୍ତେ ଭାବନ୍ତି, ଭାରତୀ ସ୍ୱୟଂ ସରସ୍ୱତୀଙ୍କ ଅବତାର । ତେଣୁ ତାଙ୍କୁ ବିବାହ କରିବାକୁ କେହି ହେଲେ ସାହସ କରି ପାରିଲେ ନାହିଁ ।

ଏହି ସମୟରେ ନର୍ମଦାନଦୀ ତୀରବର୍ତ୍ତୀ ମାହିଷ୍ମତୀ ନଗରୀର ହିତମିଶ୍ର ନାମକ ବ୍ରାହ୍ମଣଙ୍କର ପୁତ୍ର 'ବିଶ୍ୱରୂପ' ବଡ଼ ବିଦ୍ୱାନ୍ ଭାବରେ ଖ୍ୟାତି ଅର୍ଜନ କରିଥିଲେ । ଫଳରେ ଭାରତୀଙ୍କ ପିତା ବିଶ୍ୱରୂପଙ୍କ ହସ୍ତରେ ନିଜ କନ୍ୟା ଅର୍ପଣ କଲେ ।

ଠିକ୍ ଏହି କାଳରେ ଭାରତବର୍ଷରେ ଧର୍ମବିପ୍ଳବ ଦେଖା ଦେଇଥିଲା । ଏହି ସମୟରେ କର୍ମକାଣ୍ଡର ମର୍ଯ୍ୟାଦା ଓ ଯଜ୍ଞର ତାତ୍ପର୍ଯ୍ୟ ଭୁଲିଯାଇ ଲୋକେ ଯଜ୍ଞଶାଳାରେ ନରବଳି ଦେବାକୁ ଲାଗିଲେ ।·ସେଥିପାଇଁ ପ୍ରତିଷ୍ଠିତ ଧର୍ମପ୍ରତି ସର୍ବସାଧାରଣଙ୍କ ମନରେ ଘୃଣା ଭାବ ଦେଖା ଦେଲା । ଫଳରେ ବୌଦ୍ଧ ଧର୍ମର ସୃଷ୍ଟି ହୋଇ-ଥିଲା । ହିନ୍ଦୁର ବର୍ଣ୍ଣାଶ୍ରମ ଧର୍ମ ନଷ୍ଟଭ୍ରଷ୍ଟ ହେବାକୁ ଲାଗିଲା ।

* ଏହି ସନ୍ଧି କାଳେ ବିରାଟ ପଣ୍ଡିତ କୁମାରିଲଭଟ୍ଟଙ୍କର ଆବିର୍ଭାବ ଘଟିଲା । ସେ ବିଶୁଦ୍ଧ କର୍ମକାଣ୍ଡର ପ୍ରତିଷ୍ଠା କରିବାକୁ ଆଗେଇ ଆସିଲେ । ସେ ମାହିଷ୍ମତୀ ନଗରୀରେ ବାସ କରୁଥିବା ହିତମିଶ୍ର ବ୍ରାହ୍ମଣଙ୍କ ପୁତ୍ର ବିଶ୍ୱରୂପଙ୍କୁ ଶିକ୍ଷା ଦୀକ୍ଷାରେ ତାଲିମ ଦେଇ, ନିଜ ହାତରେ ପଣ୍ଡିତ ରୂପେ ତିଆରି କଲେ ।

Source: Author, Digitized by PPRACHIN, SOA

ମଧ୍ୟ ଭାରତରେ ଏହିପରି ଉଦ୍ୟମ ଚାଲିଥିଲା ବେଳେ, ଦକ୍ଷିଣ ଭାରତରେ ଶଙ୍କରାଚାର୍ଯ୍ୟଙ୍କର ଆବିର୍ଭାବ ଘଟିଲା । ଶଙ୍କରାଚାର୍ଯ୍ୟ ଉପନିଷଦ ବର୍ଣ୍ଣିତ 'ବ୍ରହ୍ମ' ଧର୍ମର ପ୍ରଚାର ଓ ପ୍ରସାର ପାଇଁ ଚେଷ୍ଟିତ ଥିଲେ । ସେ କେବଳ କର୍ମକାଣ୍ଡ ନୁହେଁ, ଜ୍ଞାନର ପ୍ରାଧାନ୍ୟରେ କର୍ମ ଓ ଉପାସନାର ପ୍ରଚାର କରିବାକୁ ସଂକଳ୍ପ ଘୋଷଣ କଲେ ।

ସେ ତାଙ୍କର ବ୍ରହ୍ମବାଦର ପ୍ରଚାର କରି କରି ଦକ୍ଷିଣ ଭାରତରୁ ପ୍ରୟାଗରେ ଆସି ପହଞ୍ଚିଲେ । ପ୍ରୟାଗଠାରେ ତାଙ୍କର କୁମାରିଲଭଟ୍ଟଙ୍କ ସଙ୍ଗରେ ଭେଟ ହେଲା ।

କୁମାରିଲ ଭଟ୍ଟ ଶଙ୍କରାଚାର୍ଯ୍ୟଙ୍କୁ ମାହିଷ୍ମତି ନଗର ନିବାସୀ ବିଶ୍ୱରୂପଙ୍କୁ ସାକ୍ଷାତ୍ କରିବାକୁ କହିଲେ ।

ଶଙ୍କରାଚାର୍ଯ୍ୟ ପ୍ରୟାଗରୁ ମାହିଷ୍ମତି ନଗରୀକୁ ଯାତ୍ରା କଲେ । ମାହିଷ୍ମତି ନଗର ମଧ୍ୟରେ ପ୍ରବେଶ କରିବା ମାତ୍ରକେ, ଶଙ୍କରାଚାର୍ଯ୍ୟଙ୍କର ଜଣେ ମହିଳାଙ୍କ ସାଙ୍ଗରେ ସାକ୍ଷାତ ହେଲା । ଉକ୍ତ ମହିଳା ଥିଲା ବିଶ୍ୱରୂପଙ୍କ ଗୃହରେ ପାଣି ଯୋଗାଇ ଦେଉଥିବା ପାଣିବାଲୀ । ବିଶ୍ୱରୂପଙ୍କ ପାଣିବାଲୀ ସଙ୍ଗରେ ଆଳାପ ଆଲୋଚନା କରିବା ପରେ ଶଙ୍କରାଚାର୍ଯ୍ୟ ତାର ବାଦ୍ ବିଦ୍ୟା ଦେଖି ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ ।

ପାଣିବାଲୀ ପାଖରୁ ଠିକଣା ପାଇ ଶଙ୍କରାଚାର୍ଯ୍ୟ ବିଶ୍ୱରୂପଙ୍କ ଘରେ ପହଞ୍ଚିଲେ ।

ଏହି ସମୟରେ ବିଶ୍ୱରୂପ ଏକ ନିଭୃତ ପ୍ରକୋଷ୍ଠ ମଧ୍ୟରେ ଶ୍ରାଦ୍ଧ କରୁଥିଲେ । ଆଚାର୍ଯ୍ୟ ଶଙ୍କର ଯୋଗ ବଳରେ ଗୃହ ମଧ୍ୟରେ ପ୍ରବେଶ କଲେ ।

Source: Author, Digitized by PPRACHIN, SOA

ଶ୍ରାଦ୍ଧ ସମୟରେ ସନ୍ନ୍ୟାସୀ ସେଠାରେ ପ୍ରବେଶ କରିବା ଅଶୁଭ ବୋଲି କୁହାଯାଏ । ତେଣୁ ବିଶ୍ୱରୂପ ସନ୍ନ୍ୟାସୀ ଶଙ୍କରାଚାର୍ଯ୍ୟଙ୍କୁ ଦେଖି ବିରକ୍ତ ହେଲେ ଓ ତାଙ୍କୁ କଠୋର ଭାଷାରେ ତିରସ୍କାର କଲେ । ଏହା ଦେଖି ଶଙ୍କରାଚାର୍ଯ୍ୟ ମଧ୍ୟ ବିଶ୍ୱରୂପଙ୍କୁ କଠୋର ଭାଷାରେ ସମାଲୋଚନା କଲେ ।

ବିଶ୍ୱରୂପ ଜାଣିଲେ, ଆଗନ୍ତୁକ ଜଣେ ସାମାନ୍ୟ ସନ୍ନ୍ୟାସୀ ନୁହନ୍ତି । ତେଣୁ ସେ ଶାନ୍ତ ହୋଇ ତାଙ୍କୁ ଭିକ୍ଷା ପାଇଁ ନିମନ୍ତ୍ରଣ କଲେ ।

ଶଂକରାଚାର୍ଯ୍ୟ କହିଲେ, ମୁଁ ସାଧାରଣ ଭିକ୍ଷା (ଭୋଜନ)ରେ ସନ୍ତୁଷ୍ଟ ହେବି ନାହିଁ । ବିରୋଧୀମାନଙ୍କୁ ପରାସ୍ତ କରି ମୁଁ ବୈଦିକ ଧର୍ମ ସଂସ୍ଥାପନ ପାଇଁ ଚେଷ୍ଟା କରୁଛି । ଏଥିପାଇଁ ତୁମେ ମୋତେ ସାହାଯ୍ୟ କର । ଯଦି ଚାହଁ, ଶାସ୍ତ୍ରାର୍ଥ କରିପାର ।'

ବିଶ୍ୱରୂପ ଶଙ୍କରାଚାର୍ଯ୍ୟଙ୍କ ସାଙ୍ଗରେ ଶାସ୍ତ୍ରାର୍ଥ ବା ଶାସ୍ତ୍ର ଆଲୋଚନା କରିବାକୁ ଚାହିଁଲେ ।

କିନ୍ତୁ ଶଙ୍କରାଚାର୍ଯ୍ୟ ଓ ବିଶ୍ୱରୂପଙ୍କ ଶାସ୍ତ୍ରାର୍ଥ ବିତର୍କ ଆଲୋଚନାରେ ଜୈମିନୀ ଓ ବ୍ୟାସଙ୍କ ସମେତ ଅନ୍ୟ କେହି ହେଲେ ବିଚାରକ ହେବା ପାଇଁ ରାଜି ହେଲେ ନାହିଁ । ସେମାନେ ସମସ୍ତେ ମତ ଦେଲେ, ବିଶ୍ୱରୂପଙ୍କ ପତ୍ନୀ ଭାରତୀ ହିଁ ଏହି ପଦ ପାଇଁ ଉପଯୁକ୍ତ ।

ଅବଶେଷରେ ବିଶ୍ୱରୂପ ସର୍ବବିଦ୍ୟା ବିଶାରଦା ସ୍ୱପତ୍ନୀ ଭାରତୀଙ୍କୁ ଆଲୋଚନା ତର୍କର ବିଚାରପତି ନିଯୁକ୍ତ କଲେ ।

Source: Author, Digitized by PPRACHIN, SOA

ଶଙ୍କରାଚାର୍ଯ୍ୟ ଓ ବିଶ୍ୱରୂପଙ୍କ ମଧ୍ୟରେ ଘମାଘୋଟ ଆଲୋଚନା ଚାଲିଲା । ଅବଶେଷରେ ବିଶ୍ୱରୂପଙ୍କ ପତ୍ନୀ ଭାରତୀ ନିରପେକ୍ଷ ଭାବରେ ଘୋଷଣା କଲେ ଯେ, ଶଙ୍କରାଚାର୍ଯ୍ୟଙ୍କର ବିଜୟ ହୋଇଛି ।

ଏହାପରେ ଶଙ୍କରାଚାର୍ଯ୍ୟ ବିଶ୍ୱରୂପଙ୍କୁ ନିଜର ଶିଷ୍ୟଭାବେ ଗ୍ରହଣ କରିବାକୁ କହିଲେ । ଏହାଶୁଣି ଭାରତୀ କହିଲେ ମହାରାଜ ! ମୁଁ ବିଶ୍ୱରୂପଙ୍କର ଧର୍ମପତ୍ନୀ । ତେଣୁ ତାଙ୍କର ଅର୍ଦ୍ଧାଙ୍ଗିନୀ । ମୋତେ ପରାସ୍ତ ନ କରିବା ପର୍ଯ୍ୟନ୍ତ, ଆପଣ ମୋର ସ୍ୱାମୀଙ୍କୁ ଶିଷ୍ୟ କରି ପାରିବେ ନାହିଁ ।

ଶଙ୍କରାଚାର୍ଯ୍ୟ ଏହା ଶୁଣି ପ୍ରକାଶ କଲେ, ଯଶସ୍ୱୀ ବ୍ୟକ୍ତି ସ୍ତ୍ରୀମାନଙ୍କ ସଙ୍ଗରେ ଶାସ୍ତ୍ର ଆଲୋଚନା କରନ୍ତି ନାହିଁ ।

ଭାରତୀ ଏହା ଶୁଣି ଶଙ୍କରାଚାର୍ଯ୍ୟଙ୍କୁ ଯେଉଁ ଉତ୍ତର ଦେଇଥିଲେ, ତାହା ଈଶ୍ୱରଙ୍କ ଦିଗ୍‌ବିଜୟ ଗ୍ରନ୍ଥରେ ଉଲ୍ଲେଖ ଅଛି । ସେ କହିଥିଲେ 'ଭଗବାନ' ଆପଣଙ୍କ ମତକୁ ଖଣ୍ଡନ କରିବାକୁ ଯିଏ ଯତ୍ନ କରିବ, ସେ ସ୍ତ୍ରୀ ବା ପୁରୁଷ ଯେକେହି ହେଉନା କାହିଁକି, ବିଜୟ ପାଇଁ ଆପଣ ଯତ୍ନ କରିବା ଉଚିତ । ଏଥିପାଇଁ ମୁନି ଯାଜ୍ଞବଲ୍‌କ୍ୟ ମଧ୍ୟ ଗାର୍ଗୀ ନାମକ ମହିଳା ସଙ୍ଗରେ ଶାସ୍ତ୍ରାର୍ଥ ଆଲୋଚନା କରିଥିଲେ । ମହର୍ଷି ଜନକ ସୁଲଭା ନାମକ ସ୍ତ୍ରୀଲୋକ ସଙ୍ଗରେ ଶାସ୍ତ୍ର ଆଲୋଚନା କରିଥିଲେ । ଆପଣ କୁହନ୍ତୁ ଏମାନେ କ'ଣ ଯଶସ୍ୱୀ ନୁହନ୍ତି ? ତେବେ ଆପଣ କାହିଁକି କହୁଛନ୍ତି, ଯଶସ୍ୱୀ ଲୋକ ସ୍ତ୍ରୀ ଲୋକଙ୍କ ସଙ୍ଗରେ ଶାସ୍ତ୍ର ଆଲୋଚନା କରନ୍ତି ନାହିଁ ବୋଲି !

ଭାରତୀଙ୍କ ଯୁକ୍ତି ଶୁଣିବା ପରେ ଶଙ୍କରାଚାର୍ଯ୍ୟ ଆଉ କିଛି ନକହି ତାଙ୍କ ସଙ୍ଗରେ ଶାସ୍ତ୍ର ଆଲୋଚନା କଲେ ।

Source: Author, Digitized by PPRACHIN, SOA

ଶଙ୍କରାଚାର୍ଯ୍ୟଙ୍କ ଯୁକ୍ତି ବେଦ ବିରୋଧୀ ନଥିଲା । ଏହା ଦେଖି ଭାରତୀ ନିଜର ପରାଜୟ ସ୍ୱୀକାର କରିଥିଲେ । ଶଙ୍କରାଚାର୍ଯ୍ୟଙ୍କ ଉପରେ ଭାରତୀଙ୍କ ମୂର୍ତ୍ତି ସ୍ଥାପନ କରି ତାଙ୍କ ପ୍ରତିଭା ତଥା ସ୍ତ୍ରୀ ଜାତିର ପାଣ୍ଡିତ୍ୟକୁ ସମ୍ମାନ ପ୍ରଦର୍ଶନ କରିଥିଲେ । ଏହି ମଠର ଶିଷ୍ୟମାନେ ଭାରତୀ ସମ୍ପ୍ରଦାୟର ।

ଅନ୍ୟ କେତେକ ସ୍ଥାନରେ ଭାରତୀଙ୍କୁ ମିଶ୍ରଙ୍କ ପତ୍ନୀରୂପେ ବର୍ଣ୍ଣନା କରାଯାଇଛି । ଏହି ମଣ୍ଡନ ମିଶ୍ରଙ୍କୁ ମଧ୍ୟ କୁମାରିଲ ଭଟ୍ଟଙ୍କ ଶିଷ୍ୟ ବୋଲି କୁହାଯାଇଛି । ପୁଣି ମଣ୍ଡନ ମିଶ୍ରଙ୍କ ପତ୍ନୀଙ୍କ ନାମ 'ସରସବାଣୀ' ବୋଲି ଅନ୍ୟ କେତକ ସ୍ଥାନରେ ଉଲ୍ଲେଖ କରାଯାଇଛି ।

ଏଥିରୁ ପ୍ରତିପାଦିତ ହୁଏ ଯେ, ଶଙ୍କରାଚାର୍ଯ୍ୟ ତାଙ୍କ ସମୟରେ ପ୍ରତିଷ୍ଠିତ ପଣ୍ଡିତ କୁମାରିଲ ଭଟ୍ଟ, ମଣ୍ଡନ ମିଶ୍ର ଓ ବିଶ୍ୱରୂପଙ୍କୁ ଶାସ୍ତ୍ରାର୍ଥରେ ପରାଜିତ କରିବା ସଙ୍ଗେ ସଙ୍ଗେ, ବିଦୂଷୀ ସରସବାଣୀ, ଭାରତୀ ପ୍ରଭୃତି ମନସ୍ୱିନୀ ମହିଳାମାନଙ୍କୁ ନିଜ ଧର୍ମ ମତରେ ପ୍ରଭାବିତ କରିଥିଲେ ।



Source: Author, Digitized by PPRACHIN, SOA

# ଉପସଂହାର

ଆଚାର୍ଯ୍ୟ ଶଙ୍କର ବୈଦିକ ଧର୍ମର ସଂସ୍ଥାପକ ଥିଲେ । ସେ ମାତ୍ର ବତିଶ ବର୍ଷ ବଞ୍ଚିଥିଲେ । ଏହି ସଂକ୍ଷିପ୍ତ ଜୀବନକାଳ ମଧ୍ୟରେ ପ୍ରସ୍ଥାନ ତ୍ରୟୀ ( ଉପନିଷଦ, ବ୍ରହ୍ମସୂତ୍ର ଓ ଗୀତା )ର ବ୍ୟାଖ୍ୟା ଓ ଅନ୍ୟାନ୍ୟ ଅନେକ ପଦ୍ୟ ରଚନା କରିଥିଲେ ।

କେବଳ ସେତିକି ନୁହେଁ, ହିମାଳୟ ( ବଦ୍ରିନାଥ )ଠାରୁ କନ୍ୟାକୁମାରୀ, ପୁରୀଠାରୁ ଦ୍ୱାରକା ପର୍ଯ୍ୟନ୍ତ ସମଗ୍ର ଭାରତବର୍ଷ ଭ୍ରମଣକରି ନିଜ ମତବାଦର ପ୍ରତିଷ୍ଠା କରି ପାରିଥିଲେ । କର୍ମକାଣ୍ଡବାଦୀ ତଥା ସେମାନଙ୍କ ପୃଷ୍ଠପୋଷକମାନଙ୍କୁ ଧର୍ମ ଆଲୋଚନାରେ ପରାସ୍ତକରି ସର୍ବସାଧାରଣଙ୍କୁ ସତ୍‌ଧର୍ମ ଓ ସତ୍‌ପଥ ଦେଖାଇଥିଲେ । ଲୁପ୍ତତୀର୍ଥ ତଥା ଦେବଦେବୀଙ୍କୁ ଉଦ୍ଧାରକରି ମଠ ଓ ସନ୍ନ୍ୟାସୀ ସଂସ୍ଥାର ସଙ୍ଗଠନ ଓ ପ୍ରତିଷ୍ଠାକରି ତାଙ୍କର ଅଲୌକିକ ଶକ୍ତିର ପ୍ରମାଣ ଦେଇଥିଲେ । ଶୈବ, ବୈଷ୍ଣବ, ଶାକ୍ତ, ସୌର, ଗାଣପତ୍ୟ ଓ କୌମାର ଧର୍ମର ସଂସ୍କାର କରି ଏହାକୁ ସୁସଂଗଠିତ କରି ପାରିଥିଲେ ।

ପ୍ରସଙ୍ଗକ୍ରମେ ଉଲ୍ଲେଖ କରାଯାଇ ପାରେ ଯେ, ଆଚାର୍ଯ୍ୟଶଙ୍କର ଅଦ୍ୱୈତବାଦର ପ୍ରଥମ ସ୍ରଷ୍ଟା ନୁହନ୍ତି । ତାଙ୍କ ପୂର୍ବରୁ ଉପନିଷଦ ଓ ବ୍ରହ୍ମସୂତ୍ରରେ ଅଦ୍ୱୈତବାଦର ପ୍ରତିଷ୍ଠା ଥିଲା; କିନ୍ତୁ ଧର୍ମଜଗତରେ

Source: Author, Digitized by PPRACHIN, SOA

କୁସଂସ୍କାର ପଶି ଯେତେବେଳେ ମାନବ ସମାଜକୁ ବିପର୍ଯ୍ୟସ୍ତ କଲା, ସେହି ଘଡ଼ିସନ୍ଧି ସମୟରେ ଶଙ୍କର ଧର୍ମ ରାଜ୍ୟରେ ସଂସ୍କାର ଆଣି ଏହାକୁ ଏକ ଯୁକ୍ତିସମ୍ମତ ଭିତ୍ତିଭୂମି ଉପରେ ପୁନଃ ପ୍ରତିଷ୍ଠା କଲେ ।

ଶଙ୍କରଙ୍କ ଆବିର୍ଭାବ ପୂର୍ବରୁ ବୁଦ୍ଧଦେବ ଭାରତ ବର୍ଷରେ ଜନ୍ମ ଗ୍ରହଣ କରି ହିନ୍ଦୁ ଧର୍ମରେ ପ୍ରଚଳିତ ବଳିପ୍ରଥା ଓ କର୍ମକାଣ୍ଡ ବିରୁଦ୍ଧରେ ଅଭିଯାନ ଚଳାଇ ବୌଦ୍ଧଧର୍ମ ପ୍ରତିଷ୍ଠା କରିଥିଲେ । କିନ୍ତୁ ବୁଦ୍ଧଦେବଙ୍କ ମୃତ୍ୟୁପରେ ବୌଦ୍ଧଧର୍ମର ତର୍କ ବିଶାରଦ ଦାର୍ଶନିକମାନେ, ଧର୍ମରୁ ଅନ୍ଧବିଶ୍ୱାସକୁ ଦୂର କରିବା ପାଇଁ କଠୋର ତର୍କ ଶାସ୍ତ୍ର ସୃଷ୍ଟି କଲେ । ଏଥିରେ ଭଗବାନଙ୍କର ଆବଶ୍ୟକତା ବି' କଟିଗଲା । କିନ୍ତୁ ଏହା ଜନ ମନକୁ ସ୍ପର୍ଶ କରି ନଥିଲା । ଜନସାଧାରଣ ବୁଦ୍ଧଙ୍କୁ ଜାଣିଥିଲେ । ତାଙ୍କୁ ଶ୍ରଦ୍ଧା, ସମ୍ମାନ ଓ ଭକ୍ତି କରୁଥିଲେ ଓ ତାଙ୍କୁ ଭଗବାନଙ୍କ ଅବତାର ବୋଲି ଧରି ନେଇଥିଲେ । ତାଙ୍କର ତିରୋଧାନ ପରେ, ତାଙ୍କପରି ଅନ୍ୟ ଏକ ମହାନ ବ୍ୟକ୍ତିତ୍ୱର ଅଭାବରେ ବୌଦ୍ଧଧର୍ମାବଲମ୍ବୀମାନେ ବୁଦ୍ଧଦେବଙ୍କ ମୂର୍ତ୍ତି ପୂଜା ଆରମ୍ଭ କରିଦେଲେ । ଏହାର ସୁଯୋଗ ନେଇ ବୌଦ୍ଧ ଭିକ୍ଷୁମାନେ ଭିକ୍ଷାବୃତ୍ତି ଛାଡ଼ି ପୁରୋହିତ ସାଜି ବସିଲେ । ତାପରେ ପ୍ରଜ୍ଞାମା ଉପାସନାକୁ ଅଗ୍ରାହ୍ୟ କରି ଦେଇଥିବା ବୁଦ୍ଧଦେବଙ୍କ ମୂର୍ତ୍ତି ମନ୍ଦିର ଓ ପୂଜା ଆରାଧନାର ବ୍ୟବସ୍ଥା ହେଲା ।

ବୌଦ୍ଧଧର୍ମର ଏହି ସଂକଟପୂର୍ଣ୍ଣ ବେଳାରେ, ହିନ୍ଦୁ ଧର୍ମର କର୍ମକାଣ୍ଡୀମାନେ ଏହାକୁ ଅପୂର୍ବ ସୁଯୋଗ ମନେ କରି, ଯାଗଯଜ୍ଞ ଓ ଆଡ଼ମ୍ବର ପୂର୍ଣ୍ଣ ମୂର୍ତ୍ତି ପୂଜାର ଆରମ୍ଭ କରିଦେଲେ । ବୌଦ୍ଧ ଧର୍ମ ପରି ହିନ୍ଦୁଧର୍ମ ଯାଗଯଜ୍ଞ ଓ ପୂଜା ଜାଲରେ ରୁଦ୍ଧ ହୋଇ ପଡ଼ିଲା ।

Source: Author, Digitized by PPRACHIN, SOA

ଏହିପରି ପୂଜା, ଉତ୍ସବ ଓ ଆଡ଼ମ୍ବରକୁ ନେଇ ବୌଦ୍ଧଧର୍ମ ଓ ହିନ୍ଦୁ ଧର୍ମ ମଧ୍ୟରେ ପ୍ରତିଯୋଗିତା ଆରମ୍ଭ ହୋଇଗଲା । ଉଭୟ ଧର୍ମର ପୁରୋହିତମାନେ ନିଜ ନିଜ ଧର୍ମର ନିରାପତ୍ତା ପାଇଁ କଠୋର ନୀତିନିୟମର ବ୍ୟବସ୍ଥା କଲେ ।

ଠିକ୍ ଏହି ଉତ୍କ୍ରାନ୍ତି ସନ୍ଧି ବେଳରେ ଆଚାର୍ଯ୍ୟ ଶଙ୍କର ଆବିର୍ଭୂତ ହୋଇ ବୌଦ୍ଧ ଧର୍ମର ବିନାଶ ସାଧନ କରିବା ସଙ୍ଗେ ସଙ୍ଗେ ହିନ୍ଦୁ ଧର୍ମର କର୍ମକାଣ୍ଡ ବାଦୀ କୁମାରିଲ ଭଟ୍ଟ ଇତ୍ୟାଦିଙ୍କୁ ପରାସ୍ତକରି ହିନ୍ଦୁ ଧର୍ମରେ ସଂସ୍କାର ଆନୟନ କଲେ । ସେ ଅଦ୍ୱୈତବାଦର ଏକ-ଛତ୍ରଧାରୀ ବିରାଟ ଦାର୍ଶନିକ, କବି ଓ ଅବଶେଷରେ ଭଗବାନଙ୍କ ଅବତାର ରୂପେ ସର୍ବସାଧାରଣଙ୍କ ଦ୍ୱାରା ଗୃହୀତ ହୋଇ ପୂଜା ପାଇଲେ ।

ଏବେ ମଧ୍ୟ ଶଙ୍କର କେବଳ ଭାରତ ବର୍ଷରେ ନୁହେଁ, ସମଗ୍ର ପୃଥିବୀରେ ଆଚାର୍ଯ୍ୟ ରୂପରେ ମାନ୍ୟତା ଲାଭ କରିଛନ୍ତି ।



ମୁଦ୍ରଣ—ଅନୁରୂପା ପ୍ରିଣ୍ଟର୍ସ, ପୁରୀଘାଟ ରୋଡ଼, କଟକ-୯

Source: Author, Digitized by PPRACHIN, SOA